# ସ୍ମୃତି ଓ ସଂକେତ

( କବିତା ସଂକଳନ )

ଲେଖକ : ଧରଣୀଧର ସାହୁ
ଇଂରାଜୀ ଅଧ୍ୟାପକ, ରେଭେନ୍ସା ସାନ୍ଧ୍ୟ କଲେଜ
କଟକ-୭୫୩୦୦୩

ପ୍ରକାଶକ : ସୁରେନ୍ଦ୍ରନାଥ ଜଗଦେବ
ମହାନଦୀ ବୁକ୍ସ, ପ୍ଲଟ ନଂ ବି-୧
ଶହୀଦ ନଗର, ଭୁବନେଶ୍ୱର-୭୫୧୦୦୭

ମୁଖ୍ୟ ପରିବେଷକ : ଅଗ୍ରଦୂତ, କଟକ-୨

ପ୍ରଥମ ପ୍ରକାଶ : ମାର୍ଚ୍ଚ, ୧୯୮୦

ମୁଦ୍ରଣ : ଲକ୍ଷ୍ମୀନାରାୟଣ ପ୍ରେସ
ଜଗନ୍ନାଥବଲ୍ଲଭ, କଟକ-୧

ମୂଲ୍ୟ :—ସାଦା ବନ୍ଧେଇ—ଆଠ ଟଙ୍କା
ବୋର୍ଡ ବନ୍ଧେଇ—ଦଶ ଟଙ୍କା

# SMRUTI O SANKETA

( A Collection of Poems )

Writer : Dharanidhar Sahu
Lecturer in English
Ravenshaw Evening College
Cuttack-753003, India

Publishers : Mahanadi Books
Plot No. B-1, Sahid Nagar
Bhubaneswar-751007, India

Chief Distributors : Agraduta,
Cuttack-2

Ist Edition : March, 1980

Price : Paperback—Rupees Eight
Hard Bound—Rupees Ten
[ Two Dollars / 50 P. ]

# ସୂଚୀ

# ନିଜ କଥା

ମାଙ୍କଡ଼ା ପଥର ବାଲିଗରଡ଼ା ହେବା ବୃତ୍ତାନ୍ତ ପଡ଼ାଉଠାର ଏକ ଅସମାନ ଗ୍ରାଫ୍ । ବାହାରକୁ ସାବଲୀଳ ଦେଖାଯାଉଥିବା ବାଲିଗରଡ଼ା ଆଘାତ ଓ ଆଲୋଡ଼ନର ଏକ ପ୍ରଜ୍ୱଳିତ ସ୍ଫୁଲିଙ୍ଗ ।

ସମାନ୍ତରାଳ ରାସ୍ତା ଏତେ କମ୍ ଯେ, ସେଠି ବି ସେଇ ଗତି, ସେଇ ତୀବ୍ର ଗଡ୍‌ଡାଳିକା ପ୍ରବାହ, ସେଇ ଉତ୍କଣ୍ଠା, ସେଇ ପରି ପଥରକୁ ବାଲିଗରଡ଼ା କରିବାର ଉଦ୍ୟମ ।

ସେ ସ୍ରୋତରୁ ନିଷ୍କୃତି ନାହିଁ ଯେତେବେଳ ଯାଏ ମାଙ୍କଡ଼ାପଥର କ୍ଷୁଦ୍ର ଓ ମସୃଣ ବାଲିଗରଡ଼ା ନ ହୋଇଛି । ସେତେବେଳେ ସେ ଏତେ ଗଡ଼େ ନାହିଁ, କିମ୍ବା ସ୍ରୋତ ତାକୁ ଆଉ ଗଡ଼େଇବାକୁ ପ୍ରୟାସ କରେନ— କୂଳକୁ ଫିଙ୍ଗିଦିଏ ହାବୁକାରେ । ତଟସ୍ଥ ହୋଇ ପଡ଼ି ରହି ସେ ନିବିଡ଼ ହୁଏ, ଆତ୍ମସ୍ଥ ହୁଏ, ତାର ଅଙ୍ଗେ ନିଭେଇ ଥିବା ଘଟଣା ପ୍ରବାହର ଅନୁଶୀଳନ କରେ ।

ଚାରିଆଡ଼େ କୂଳସାରା ବିଛୁଡ଼ି ହୋଇ ପଡ଼ିଥିବା ସମଗୋତ୍ରୀ ବାଲିଗରଡ଼ାମାନଙ୍କ ସହିତ ଏକ ଆତ୍ମିକ ସମ୍ପର୍କ ସ୍ଥାପନ କରିବାକୁ ହୁଏତ ସେ ଆଗ୍ରହୀ ହୁଏ । ଯଦି ସେ କୃତକାର୍ଯ୍ୟ ହୁଏ, ସେଇଟା ତାର ନୈସର୍ଗିକ ଆନନ୍ଦ । ଯେପରି ସେ ତାର ଯନ୍ତ୍ରଣାର ଏକ କାରଣ ପାଇଗଲା, ଜୀବନର ଗୋଟେ ମାନେ ପାଇଗଲା ।

ଏ କବିତାଗୁଡ଼ିକୁ ପଢ଼ି ଯଦି କିଏ ସାମାନ୍ୟ ଆନନ୍ଦ ପାଇଲା, ତେବେ ଏମାନଙ୍କୁ ଲେଖିଥିବା ବ୍ୟକ୍ତିର ଶ୍ରମ ସାର୍ଥକ ହେବ ।

ଯେଉଁ ପୂଜ୍ୟ ଶିକ୍ଷକ ଏବଂ ବନ୍ଧୁମାନେ ବିଭିନ୍ନ ସମୟରେ, ବିଭିନ୍ନ ପରିପ୍ରେକ୍ଷୀରେ ଏ ଲେଖକକୁ ସୁସ୍ଥ ସମାଲୋଚନା ଦ୍ୱାରା ଉତ୍ସାହିତ

କରିଛନ୍ତି ସେମାନଙ୍କ ପାଖରେ ସେ କୃତଜ୍ଞ । ସେମାନେ ହେଲେ– ପ୍ରଫେସର ବିଧୁଭୂଷଣ ଦାସ, ଚିତ୍ତରଞ୍ଜନ ଦାସ, ଅଧ୍ୟାପକ ବେଣୁଧର ରାଉତ, ଅଧ୍ୟାପକ ରତ୍ନାକର ଚଇନି, ଅଧ୍ୟାପକ ଅଭିନ୍ନ ଚନ୍ଦ୍ର ସାହୁ, ଅଧ୍ୟାପକ ରମେଶ ପାଣିଗ୍ରାହୀ, ଅଧ୍ୟାପକ ସରୋଜ କୁମାର ସିଂହ, ଅଧ୍ୟାପକ ଦୁର୍ଗାମାଧବ ପ୍ରହରାଜ, ଅଧ୍ୟାପକ ନିରଞ୍ଜନ ଶତପଥୀ, ଅଧ୍ୟାପକ ଚୈତନ୍ୟ ପ୍ରସାଦ ସେଠୀ ଏବଂ ମୋ ସ୍ତ୍ରୀ ।

ଅଧ୍ୟାପକ ପ୍ରଫୁଲ୍ଲ କୁମାର ଜଗଦେବ ଏ ବହିଟିର ପ୍ରକାଶନରେ ବହୁବିଧ ସାହାଯ୍ୟ କରିଥିବାରୁ ତାଙ୍କୁ ମୋର ହାର୍ଦ୍ଦିକ ଧନ୍ୟବାଦ ।

ଧରଣୀଧର ସାହୁ



ବାପାଙ୍କ ସ୍ମୃତିରେ

ମା'ର ହାତରେ

'ସ୍ମୃତି ଓ ସଙ୍କେତ'

ଅର୍ପଣ କଲି ।

—ଧରଣୀଧର—

# ଅନ୍ୱେଷଣ

ମୋ ପ୍ରିୟ ସ୍ନାୟୁଗଣ ! ଚତୁର୍ଦ୍ଦିଗ ଖେଳିଯାଅ ଶବ୍ଦର ତରଙ୍ଗ ପରି
ଘୂରିଯାଅ ଘିର୍‌ଘିର୍ ନଟୂପରି ଆତ୍ମକେନ୍ଦ୍ରେ ବୃତ୍ତ ସ୍ନାୟୁକଣ୍ଡ ।
ହଜିଗଲା ପଦାର୍ଥକୁ ଅନ୍ୱେଷଣ କର, ଅଶେଷ କଷଣ ସହି
ଦେହର ଓ ହୃଦୟର ଅନାଚ୍ଛାରେ, ବାଆ ବତାସରେ
ହାତରେ କଠଉ ଧରି ମାଗିଯାଅ କଣ୍ଟାକଣ୍ଟା ବଣଜଙ୍ଗଲ ପର୍ବତ କନ୍ଦରେ
ମନକୁ ସଂଯୋଗ କରି ଯନ୍ତ୍ରଣାରେ ଛଟପଟ ମଣିଷ ଅନ୍ତରେ
ଏବଂ ପୋଡ଼ି ଯାଉଥିବା ଜତୁଘରେ ପଡ଼ୋଶୀ ସଙ୍ଗରେ ।

ଶୁଣ ବାବୁ ଆଉ ଗୋଟେ କଥା । ସ୍ତବକ ସର୍ବଦା ଏକ ଶବ୍ଦ
ଏକ ରଙ୍ଗ ଏକ ବାସ୍ନା ଏକ ରୂପ ଏକ ପରମ୍ପରା
ଏକ ଲକ୍ଷ୍ୟ ଏକାଗ୍ରତା-ଅନ୍ତର୍ଦୃଷ୍ଟି ଷଡ଼ଭୁଜ ତ୍ରିଭୁଜ ଓ ଚତୁର୍ଭୁଜ
ବୃତ୍ତ ଓ ବଳୟ ଏକ ଲକ୍ଷ୍ୟ ଏକାଗ୍ରତା କୋଟି ଚନ୍ଦ୍ର ସମଜ୍ୟୋତି
ତନ୍ମାତ୍ର ପ୍ରକୃତି । ବଉଦରୁ ତୋଳିବନି ଫୁଲ । ଗତି ଯତି ହ୍ରାସବୃଦ୍ଧି
ଶୁଣି କେଉଁ ସଙ୍ଗୀତ ମୂର୍ଚ୍ଛନା, ନଦେଖିବା ପ୍ରଲୋଭନ,
ବସ୍ତୁରବ ପରାମର୍ଶ ପଦାର୍ଥ ସନ୍ଧାନ । ଯେପରି ଯାହାଠା ସତ୍ୟ
ଆଉ ସବୁ ଅଳୀକ ଭେଜାଲ ।
ବଉଦରୁ ତୋଳିବନି ଫୁଲ ।

ଯେ ପଦାର୍ଥ ହଜିଗଲା, ତାର ରଙ୍ଗ ତାର ସ୍ୱାଦ ତାର ପରିସର
ତାକୁ ଆଗ ଚିହ୍ନାକର, ମନକୁ ଆତ୍ମାରେ ବାନ୍ଧି, ପବନକୁ ଧୀରେ ନିଅ
ଧୀରେଧୀରେ ନିଶ୍ୱାସନ କର । ପୂର୍ଣ୍ଣଚନ୍ଦ୍ର ଧ୍ୟାନକର ଅମାବାସ୍ୟା ପ୍ରତିପଦ
ଦିନ । ବାରମ୍ବାର ନିରବରେ ରଢ଼ିକର ଆଲୋକକୁ ନେଇଯାଅ ପ୍ରଭୁ
ମୋର ମନ ମୋର ଦେହ ସ୍ନାୟୁକଣ୍ଡ ଅନ୍ଧକାର ସୂଚୀଭେଦ୍ୟ ଅନ୍ଧକାର
ସ୍ୱାଧୀନତା ଦିଅ ଟିକେ, ମୋର ମନ ମୋର ଦେହ ଚାରିକଣ୍ଡ
ଭାଇବନ୍ଧୁ ଜ୍ଞାତି ଓ ସୋଦର, ପଡ଼ୋଶୀ ଓ ପରିବାର, ଜମିଦାର ଗୃହକାର
କଳାକଳା ଛଳଛଳ ଆଖିଗୁଡ଼ା ସତର୍କରେ ଲକ୍ଷ୍ୟକରେ

ପ୍ରତ୍ୟେକ ମୋ ଅଙ୍ଗଭଙ୍ଗୀ ପିଲ୍ଲାଳିଆ କଥା ଓ ବେଶର
ବ୍ୟଙ୍ଗାତ୍ମକ ହାସ୍ୟ ହସେ, ଭୂତ ଓ ଭୈରବ ନାଚେ କଳାବାଟି ଅନ୍ତରୀକ୍ଷ
ଧୂମ୍ରପାନ ମଦ୍ୟପାନ ଧନୁଗରର ତୂଣୀର ନିଷେଧ
ଆଗରେ ଆବର ନୁହ ମୁକ୍ତ ନିଷାଦ, ଜନ୍ମାନ୍ତ ତୋ ଅସମ୍ଭବ
ତୁ ଯଦି ଖାଦ୍ୟ ବା ମଇଳ ପାଇଁ ହଂସକୁ ନିଃସଙ୍ଗ କରୁ
ଯଦି ସଦା ଲିପ୍ତ ରହୁ ପଙ୍ଗୁ ଏବଂ ଫାଲ୍‌ଗୁନରେ ମାଂସ
ଏବଂ ମତ୍ସ୍ୟଫେଣାଠାରେ
କରୁ ଯଦି ବ୍ୟଭିଚାର କମ୍ବା କେଉଁ ଯୌନ ଅପରାଧ ।

ନେ ପଦାର୍ଥ ହରଗଲ, ନେ ବସ୍ତୁର ରଙ୍ଗ ସ୍ୱାଦ ପରସର
ଧୀରେ ଧୀରେ ଧ୍ୟାନ କର ରେ ଚାରଣ, ଭୁଲିଯାଅ ଅନ୍ଧକାର
ପୂର୍ବଦ୍ୱାର ଜ୍ଞାନଜନ ଭୁଲିଯାଇଁ ଅଭିଜ୍ଞତା, ମିନାଲ୍‌ଭ, ଭୂଗୋଳ ଓ ଇତିହାସ
ହରସ୍କୋପ୍ ପେରିସ୍କୋପ୍ ଷ୍ଟେଥୋସ୍କୋପ୍ ତୋର ଯେତେ ଅର୍ଜିଥିବା ଜ୍ଞାନ
ଭୁଲିଯାଇଁ ନୂଆ ନୂଆ ଯୌବନ ହୁଙ୍କାର
ଭୁଲିଯାଇଁ ବେଣୀତଳ ଚମ୍ପାଫୁଲ ବାଇଗଣୀ ବ୍ଲାଉଜ ବୋତାମ
ଭୁଲିଯାଇଁ ଜଳଚନ୍ଦ ବାୟୁଚନ୍ଦ ପ୍ରାକୃତିକ ଚନ୍ଦ ଅଭିମାନ
ଭୁଲିଯାଇଁ ମନୁ ଏବଂ ପାତଞ୍ଜଳି ଜୀବ ଓ ପରମ
ଧୀରେ ଧୀରେ ଧ୍ୟାନକର ସ୍ଲେଟ ଏବଂ ସହସ୍ରଳୀ କର ପରିଷ୍କାର
ପରିଷ୍କାର କରିସାରି ପାପଢେଳ ପଡ଼ିଥିବା
ଆଲୋକ ସନ୍ଧାନୀ କେତେ ଗାଠଙ୍କର ମୃତଦେହ
ବିକୃତ ସତ୍କାର ।

କିନ୍ତୁ ହାୟ, ଗୁରଣର ଏକା ଜିଦ୍ ସେ ହେବ ସ୍ୱାଧୀନ
ସେ ହେବ ସଂପୂର୍ଣ୍ଣ ମୁକ୍ତ ପ୍ରଭୁତ୍ୱ ଓ ପରାକାଷ୍ଠା ଠାରୁ
ଗୁରଣର ଏକା ଜିଦ୍ ସେ ଭାଙ୍ଗିବ ମଡ଼ମାଡ଼
କଣ୍ଟାବାଡ, ପଂଜୁରି ଓ ଫୁଲଦାନୀ, ଶାସ୍ତ୍ର ସମ୍ବିଧାନ
ସେ ଉଡ଼ିବ ଫଡ଼ଫାଡ଼ ଡେଣାପିଟି ଧଳାମେଘ
ବତାସ ଉପରେ
ସେ ଯେଣୁ ଜାଣିନା ମାନ୍ଦ ସେ ଡେଇଁବ ଫକ୍‌ଫାକ୍
ଖାଚନଲର ଆବୃତ ରାଜ୍ୟରେ ।

ଆରେ ହେ ସୁନ୍ଦର ପକ୍ଷୀ, କଥା ଟିକେ ଶୁଣ, କଣ ହେବ ଏତେ
ସ୍ୱାଧୀନତା ତୋର, କଣ ତୋର ଦରକାର ରାଜନୀତି କ୍ରିକେଟ ଖବର
କହକହ କଣ ତୋର ଦରକାର, ଏଡ଼େ ଶ୍ରେଷ୍ଠ ଡେଣା ତୋର
ଏତେ ଶ୍ରେଷ୍ଠ ଫଳଟିଏ ତୋର ଦରକାର । କଣ ହେବ ଏତେ ଗୁଡ଼ା
ପ୍ରତିଶ୍ରୁତି ଦୂରଦୃଷ୍ଟି ସାଂସାରିକ ପ୍ରତିପତ୍ତି ଯଦି ତୋର କଣ ଥାଏ
ବୃତ୍ତ ଅନ୍ଧସନ୍ଧ-ରାଜତନ୍ତ୍ର ଗଣତନ୍ତ୍ର ସମ୍ବିଧାନ ଆନ୍ଦୋଳନ-ରାଜା
କିମ୍ବା ମନ୍ତ୍ରୀ କିମ୍ବା ଗଣଶ୍ରେଷ୍ଠ
କହିବାର ବଞ୍ଚିବାର ହସିବାର ସ୍ୱାଧୀନତା, ସ୍ୱାଧୀନତା ପାଗଳ ହେବାର
ସ୍ୱପ୍ନପ୍ରେମ ବିବାହ ଓ ଗୁଡ଼ପଣ ସ୍ୱାଧୀନତା, ସ୍ୱାଧୀନତା ଉଦ୍ଭଟ ଚିନ୍ତାର
କ୍ଷୁଧା ଓ ଜିଗୁପ୍ସା ପାଇଁ ଜନ୍ମଗତ ସ୍ୱାଧୀନତା, ଶଯରେ ଓ ବିସ୍ତ୍ରାପରେ
ପତ୍ରେ ପତ୍ରେ ଫୁଲେଫୁଲେ ସ୍ୱାଧୀନତା ଦରକାର ଚୁମ୍ବନ ଓ ଆଲିଙ୍ଗନ ପାଇଁ
ଯଦି ତୋର ସ୍ୱାଧୀନତା ଦରକାର, ଆର୍ଥିକ ଓ ସାମାଜିକ
ପ୍ରାଗ୍ଐତିହାସିକ । ଆରେ ହେ ସୁନ୍ଦର ପକ୍ଷୀ, କଥାଟିକେ ଶୁଣୁ
କଣହେବ ଏତେ ସ୍ୱାଧୀନତା ତୋର, କଣ ତୋର ଦରକାର ରାଜନୀତି
କ୍ରିକେଟ ଖବର, କେତେ ଶ୍ରେଷ୍ଠ ଡେଣା ତୋର ।
କେତେ ଶ୍ରେଷ୍ଠ ଫଳଟିଏ ତୋର ଦରକାର ।

ଯେ ଯେଉଁ ସରଳରେଖା, ସମାନ୍ତର, ତ୍ରିଭୁଜ ଓ ବର୍ଗକ୍ଷେତ୍ର
ସବୁ ଏଇ ବିନ୍ଦୁର ବିସ୍ତାର, ସବୁସ୍ଥିତି ପରିସ୍ଥିତି ଉପସ୍ଥିତି-ଅଙ୍ଗାର
ଓ ନାଭିକୁମ୍ଭ, ଟେବନ ଓ ପଙ୍କର ବିକାର । ଜନ୍ମବନ୍ଧା କନଅର ଫୁଲ
ଶୂନ୍ୟ ଥାଇଁ ଝୁଲିବାଠୁଁ ତଳେ ପଡ଼ି ସ୍ଥାଣୁ ହେବା ଭଲ
ବିନ୍ଦୁଙ୍କର ଭାବଧାରା ଅବିଛିନ୍ନ
ଚମତ୍କାର ଏମାନଙ୍କ ଚଳନ, ପ୍ରକାର ।

କଣ୍ଠସ୍ୱନ ତଳେ । ତୁମେ ସବୁ ଉଡ଼ୁଥିଲ ଜିନ୍ଦାବାଦ ହିପ୍ ହିପ୍ ହୁରେ
ଆଗ ଜଣେ ଅନେକ ତାପରେ । ହେ କ୍ଷୁଦ୍ର ବିଚ୍ଛିନ୍ନ ଅଣୁ,
ହେ ମୋର ସ୍ମରଣ, ଏବେ ତୁମେ ମୌନ ହୁଅ
ସ୍ଥିର ହୋଇ ଠିଆରୁହ । ବେଢିଯାଅ
ତୁମ ଦେହ ବୃଣଆଡ଼ ବୁଢ଼ିଆଣୀ ଜାଲ
ତା ପରେ ନେଳିଆ ଲଟା, ଉଇହୁଙ୍କା, ବରଗଛ, ତାମ୍ରବର୍ଣ୍ଣ ଶମ୍ବୁକ ।

ସ୍ଥିର ହୋଇ ଠିଆ ବୃଦ୍ଧ ବନ୍ସ୍ୟାଜ ଭୂମ ପରେ
ଝଡ଼ ବର୍ଷା ଗାଳି ଅପମାନ, ଦାରିଦ୍ର୍ୟ ଓ ଗୃହକଷ୍ଟରେ ମାନହାନି,
ଦାମ୍ପତ୍ୟ କଳହ, ପିତାହାନି, ବନ୍ଧୁହାନି,
ପ୍ରିୟଜନ କୃତଘ୍ନତା କୁମନ୍ତ୍ରଣା, ମୂଲ୍ୟବାନ ଦ୍ରବ୍ୟହାନି,
ମରୁଡ଼ି ଓ ନଈବଢ଼ି, ମଚ ଗଛ ଉଚ୍ଚ ସ୍ଥାନୁ ପଡ଼ିଯାଇ
ମେରୁଦଣ୍ଡ ଭାଙ୍ଗିଯିବା, ଗାଡ଼ଫେଲ୍ ଚୌରଭୟ,
ସ୍ଥିର ହୋଇ ଛୁକାରୁଦ୍ଧ· ଶାନ୍ତ ନିର୍ବିକାର, ହଜଗଲ ପଦାର୍ଥକୁ
ସନ୍ତର୍ପଣେ ଧ୍ୟାନ କର, ରଙ୍ଗସ୍ୱାଦ ପରସର ଆକାର ପ୍ରକାର
ଭୁଲିଯାଇ କ୍ରୋଧ ଲୋଭ ଅଭିମାନ ଅହଂକାର ଯୌନ ପ୍ରଲୋଭନ
ଯୁବତୀର ନାଭିକେନ୍ଦ୍ର, ଅନ୍ତରୀପ ନାରିକେଳ
ସ୍ୱରସାମ୍ୟ ଉତ୍ଥାନ ପତନ
ସାମୟିକ ସତ୍ତ୍ୱହୀନ ଆଶ୍ୱାସନା,
ନିଶ୍ୱାସନ, ଗୁପ୍‌ଚୁପ୍, ମଗାଯନ୍ତ୍ର
କଷ୍ଟଭସ୍ମ କଷ୍ଟସ୍ନେହ ସମୁଦ୍ର ମଂଥନ । ସତାଇଶ ବର୍ଷେ
ମହାଶଷ୍ଟ, କନ୍ୟାଲଭ କୃଷ୍ଣବର୍ଣ୍ଣ ପଦାର୍ଥରେ ଅତ୍ୟନ୍ତ ଆଗ୍ରହ ।

ଏତ ସବୁ ବଡ଼ ଉପାଖ୍ୟାନ, ଛିଡ଼ାରୁଦ୍ଧ ଅଶରୀରୀ
ପ୍ରଲୋଭନ କରି ପ୍ରତ୍ୟାଖ୍ୟାନ । ଗାଢ ମନ ଯା'ର ପରିଷ୍କାର
ସେ ଏକା ପାରିବ ଡେଇଁ ଅକ୍ଲେଶରେ ତେର ନଈ ସାତଟା ସାଗର
ଯା' ଦ୍ୱାରା ସମ୍ଭବ ସବୁ ଅସମ୍ଭବ ସୀତାଠାବ ତା ଦ୍ୱାରା ସମ୍ଭବ
ସେ ଦେଖିବ ସକାଳର ସ୍ୱର୍ଣ୍ଣଲଙ୍କା ବୃକ୍ଷ କାରାଗାର
ସେ ଲଂଘିବ ଅଭେଦ୍ୟ ପ୍ରାଚୀର, ସେହି ଏକା ବାଣ୍ଡାବନ୍ଧ
ସେଇ ଏକା ପ୍ରାଣର ଦୋସର ।

ଆରେ ହେ ସୁନ୍ଦର ପକ୍ଷୀ, ମାଡ଼ ତ ପଂଜୁରୀ ନୁହେଁ
ମାଡ଼ନ୍ତ ଉପରେ ଅଛୁ-ଘର ପରେ ଗଛଲତା ପରେ

ବୁଢ଼ୀଆଣୀ ଜାଲପରେ ଉଇହୁଙ୍କା ବରଗଛ ଗମ୍ବୁଜ ଉପରେ
ସେ ମଣ୍ଡ଼ ମଧ୍ୟରେ ଥାଇଁ ଦେଖୁଥାଅ ଏ ରାଜ୍ୟ ଖବର
ସ୍ଥିର ହୋଇ ଠିଆଥିବା ମଣିଷଟା କିଏ ତୋର
ହଜିଥିବା ପଦାର୍ଥର ସ୍ଥିତି ଓ ସମ୍ପର୍କ । ପଦାର୍ଥକୁ ଖୋଜୁଥିବା
ଲୋକଙ୍କର ତୁମ୍ଭେ ଏକା ସାକ୍ଷୀ, ଜରଦ୍‌ଗବ ଘଟୋତ୍କଚ ପରି
ଏ ସବୁକୁ ପ୍ରଣିଧାନ କର ।
ଆରେ ହେ ସୁନ୍ଦର ପକ୍ଷୀ, କଥା ଟିକେ ଶୁଣ
କଣ ହେବ ଏତେ ସ୍ୱାଧୀନତା ତୋର
କେତେ ଶ୍ରେଷ୍ଠ ଡେଣା ତୋର
କେତେ ଶ୍ରେଷ୍ଠ ଫଳଟିଏ ତୋର ଦରକାର ।



# ଧଳା ପାରା

ପ୍ରଥମ ସାକ୍ଷାତେ ମୁଁ କହିଲି
ଆରେ ମୋର ଧଳାପାରା, ଦେଇ ଦେ ସବୁ ତୋର
ଦେଶ ଆଉ ପର । ବସିଯା ନିର୍ବସ୍ତ୍ର ହୋଇ, ଦୁଇ ଗୋଡ଼େ
ଗୁଲ୍ ବୁଲ୍ ଖେଳେଇ ଖେଳେଇ, ଉଡ଼ିବା ସ୍ଥଗିତ କର
ବସିଯା' ତୁ ନିର୍ଭୟରେ ମାଙ୍କଡ଼ା ପଥରେ, ଚଳେ ଥାଉ
ଅନ୍ତରଜ, ବାଜପକ୍ଷୀ ନିରେଖୁ ଉପରେ, କାହାକୁ ବା
ଭୟ ତୋର, ଏତେ ବଡ଼ ଦୁନିଆଁରେ କିଏ ତୋର, ତୁ ଅବା କାହାର
ଦାୟିତ୍ୱ କର୍ତ୍ତବ୍ୟ କଣ, ଗୁହଁନୁ ତ ଉତ୍କ୍ରଷ୍ଟତା, ସମାଜରେ
ଢିପ ସ୍ଥାନ, ପ୍ରତିମୂର୍ତ୍ତି ଉନ୍ମୋଚନ ।

ସବୁ ଖାଲି ବାୟୁ ବିଡ଼ମ୍ବନା । ସେଇ ଏକ
ଧଳା ପାରା, ହାତ ପାହାନ୍ତାରେ ଥାଇଁ
କାହାକୁ ସେ ଧରା ଦେଇ ନାହିଁ ।
କାହାକୁ ସେ ପାଶୋରନ, ସଜାଡ଼ିବା
ପ୍ରୟାସ କରନ ।

କେବେଥରେ ଗୁହିଁବୁନି ଫେରି, ପାଇବାକୁ କିଛି ଭେଟି
କିଛି କୃତଜ୍ଞତା, କିଛିଟା ପ୍ରତିଷ୍ଠା କିମ୍ବା ପ୍ରେମର ପ୍ରଲେପ
ଏଠି କିଛି ମିଳେନାରେ ବାସ୍ତବରେ, ଏଠାକାର ସନ୍ଦେହୀ ମଣିଷ
ଜାଣେ ନାହିଁ କାହାର ବା କେବେକାର, କେଉଁଠାର କପଟ ପ୍ରକାର
ଦୋ ଦୋ ଫାନ୍ଦ୍ ଜୀବନ ବିସ୍ତର ।

ତୁ ସିନା ଜାଣୁନା ବାବୁ, ତୋର ଶ୍ରେଷ୍ଠ ଦେଶର ପବନ
ସମସ୍ତଙ୍କୁ ବ୍ୟତିବ୍ୟସ୍ତ କରେ, ଦୁଃଖ ଦିଏ
ଲଜକୁଳି ପଣ ସବୁ ତୋ ଶବ୍ଦରେ
ଲୀନ ହୋଇଯାଏ ।

ରାତିର କୌଣସି ଏକ ନୀରବ ସମୟେ
ହଠାତ ସତର୍କ ହେଲି ଶୁଣି ଚୋର ଡେଣା ଶବ୍ଦ
ଅନ୍ତଃସାର ଆନ୍ଦୋଳିତ, ମତିଭ୍ରମ ସମ୍ଭ୍ରମ ଚକିତ
ହଠାତ୍ ବାଉଳି ହେଲି, ଆଉଁ ସାଉଁ ଅଜାଣତେ ଗପିଗଲି
କିଏରେ ତୁ ଧଳାପାରା, କାହିଁ ତୁ ଅଇଲୁ
ଘର ଫାଡ଼ ଫାଡ଼ କରି ନିଦଟାକୁ ଭାଙ୍ଗି ଦେଲୁ
କି ସୁଖ ପାଇଲୁ ।

ଆରଦିନ ସନ୍ଧ୍ୟାବେଳେ ବୁଲୁ ବୁଲୁ
ଆବିଷ୍କାର କଲି କେତେ ଗୋଟି ଧଳା ପାରା ପର
ନଈ କୂଳେ କୃଷ୍ଣଚୂଡ଼ା ମୂଳେ ।
ପାରା କିଣ ମରିଗଲା, ପାରାକୁ କେ ହତ୍ୟା କଲା
ପାରାଟି କି ବାୟା ହେଲା, ପାରା କି ମୋ ଅଭିମାନ କଲା ।

ପାରା ଠାରୁ ପାରା ପକ୍ଷୀ କିପରି ଅଲଗା
ହେଲା । ଅଜାଣତେ ପାରା ଲାଗି ମନ ମୋ
ଚହଲି ଗଲା । ପାରା ପାଇଁ ଅନ୍ତର୍ଦାହ ହେଲା ।

ସେ ଦିନୁ ଖୋଜୁଛି ମୁହିଁ ଗିରି ବନ, ପର୍ବତ କନ୍ଦର
ନଈ ପଠା, ଜାମୁଡାଳ, ବନ୍ଧୁଆ, ସିନ୍ଦୁକ ସନ୍ଧି, ଡାଏରିର
ପ୍ରତି ପୃଷ୍ଠା, ଦେବଦାରୁ କୃଷ୍ଣଚୂଡ଼ା ଡାଳପତ୍ର, ଚନ୍ଦ୍ରାପର୍ଚ୍ଚ
ସାଙ୍ଗଙ୍କର ପାରାଘଡ଼ି, ନନ୍ଦନ କାନନ
କୋଣାର୍କର ସୂର୍ଯ୍ୟରଥ ଝାଉଁବନ
ସହରର ଉପକଣ୍ଠେ କଂସେଇ ଦୋକାନ ।

ଟିକିଏ ରାଗିଲି ବୋଲି ଅଭିମାନୀ ଧଳା ପାରା
ଅନ୍ତର୍ଦ୍ଧାନ ହେଲା
ଜାଣି ପାରିନି ପାରା ମଲା କି ରହିଲା ।



# କଣ୍ଟା

ଯେଉଁମାନେ ଫୁଲ ତୋଳ କଣ୍ଟା ପ୍ରତି ସାବଧାନ ରୁହ
କଣ୍ଟା ଯେ ତୁମର ଶତ୍ରୁ ତୁମେ ତାକୁ ଜାଣିବା ଆଗରୁ
ତା' ଠାରୁ ଦୂରେଇ ରୁହ ଫୁଲଙ୍କର ପ୍ରଲୋଭନ ଯଦି ଏଡ଼ିପାର
କେତେ ନିଃସହାୟ ଏବଂ ଆବଶ୍ୟକ ଏଇ ଯେତେ ରଙ୍ଗୀନ୍ ପାଖୁଡ଼ା
ଏମାନଙ୍କ ଯଥାବିଧି ଯତ୍ନ ଏବଂ ନିରାପତ୍ତା ଲୋଡ଼ା
ଯଥା, ଏଇ ତୁମ ହାତ ଏବଂ ମନଙ୍କର ଅଭିପ୍ସା ଓ ନିଷ୍ଠୁରତା ଠାରୁ

କଣ୍ଟା ବୁଲେ ଛପି ଛପି ରାସ୍ତା ଧୂଳି ପଦଚଳ ପଥର ସନ୍ଧିରେ
ଏବଂ ସୁନ୍ଦର ରଙ୍ଗୀନ୍ କେତେ ଫୁଲଙ୍କର ବୃନ୍ତ ବୃଣିକତେ
ଫୁଲଙ୍କ ରଙ୍ଗରେ କେବେ ଆତ୍ମହରା ହୋଇ
ମୁନଙ୍କୁ ଧାରୁଆ କରେ କା'କୁ କେବେ ଫୋଡ଼ିଦେବା ପାଇଁ
କା'କୁ କେବେ କରିବାକୁ ରକ୍ତାକ୍ତ ଓ ଅନାସକ୍ତ
ବହୁଗୁଡ଼େ ରକ୍ତସ୍ରାବ ପରେ ।

କଣ୍ଟାର ତୀର୍ଯ୍ୟକ ରଶ୍ମି ପଶିଆସେ ବଞ୍ଚିବାର
ଛିଦ୍ର ଭେଦକରି, ଚୁମା ଓ ଚନ୍ଦନ ଦିଏ, ଫୁସୁଲାଏ
ଅନ୍ତରଙ୍ଗ କରେ, ଆକସ୍ମିକ ଅଜାଣତେ ଅନ୍ତର୍ଦ୍ଧାନ
ହୁଏ, ଛାଡ଼ିଯାଏ ସାପକାତି, ମିଛି ମିଛି ଯୋଡ଼ା ହାଣ୍ଟ
ଛାଡ଼ିଯାଏ ଖୋଜିବାର, ଝୁରିବାର, ହାରିବାର ପରମ୍ପରା
ଛିଡ଼ା ଜାଲ ଉନ୍ମୁକ୍ତ ମୁଗୁରା, ରାତିସାରା ଉଜାଗର
ମାଛଟେ ଦିଏନି ଧରା, ଡେଇଁଯାଏ ଖପ୍‌ଖାପ୍ ଅଜା ଆଈ
ବାପା ବୋଉ ପୋଷା ପାରା କାଳଗାଈ ଛକିଜନ
ଛାତରେ ହୁଅଇ କଣା ନିର୍ମମ ତୀର୍ଯ୍ୟକ ଖରା
ଆବୋରଇ ଗର୍ଭିଣୀର ପ୍ରତ୍ୟେକ ବଖରା ।

ରାସ୍ତାରେ କଣ୍ଟାର ଯେଉଁ ତୀବ୍ର ବିଚ୍ଛୁରଣ
ତୁମେ ତାକୁ ଦେଖିନାହିଁ ଦେଖିବାକୁ କରିଅଛ ମନ

ମାଢ଼ି ଓ ମକ୍ଡ଼ି ହୋଇ ପଡ଼ିଥିବା କଣ୍ଢାଫୁଟା ଝିଉବ୍ ଗୁଡ଼ିକ
କ'ଣ ଭାବ ଭାବି ଭିତରେ ହୋଇ
ବାରମ୍ବାର ଦଉଡ଼ିଛି ଶଇତାନ୍ କଣ୍ଢାଟାକୁ ପାଇଯିବା ପାଇଁ
ସେ କେବେ ଦେଇନ ଧରା ତୁମକୁ ବା ଆଉ କା'କୁ
ନିଛକ ରାସ୍ତାରେ ସିଏ ଚୁପ୍‌କରି ଛପି ବସିଥାଏ
ସୁଡୌଲ ବର୍ତ୍ତୁଳ ସେଇ ଝିଉବ୍ ଟାକୁ କଣାକରି ନଷ୍ଟ କରିଦିଏ
ଅଜାଣତେ ଲୁଟି ନିଏ ଏ ତୁମରି ଅତି ଯତ୍ନେ ଗଢ଼ିତ ସଂସାର
ଯା'କୁ ଦିନେ ଭାବଥିଲ ଅତି ଆପଣାର । କଣ୍ଢାଟାର ନର୍ମମ ବେଭାର ।

କଣ୍ଢା ନୁହେଁ କଳାକାହ୍ନୁ ଅର୍ଜ୍ଜୁନଙ୍କ ସାଥୀ ବା ସାରଥୀ
ଭଉଁସ ରାତିରେ ସିଏ ଗୋପୀଙ୍କର ସ୍ତନ ଉଷ୍ଣାଳନ୍ତ
କଣ୍ଢା ଏ ମାଗନ୍ତା ଲୋକ ନେଫଡ଼ା ପିଞ୍ଜରାହାଡ଼ କଦାକାର ରୂପ
ତା' ଦେହର ଫଡ଼ା ପୃଷ୍ଠା ତା' ମନର କୋହ ଓ ବିଦ୍ରୂପ
କଣ୍ଢାଟା ପାର୍ଥିବ ନୁହେଁ ପାଞ୍ଚ ମନ ପଚଶ ପ୍ରକୃତ
କଣ୍ଢା ନୁହେଁ ଝୁମୁକା ପ୍ଲାଷ୍ଟିକ୍ ଫୁଲ ବେଲୁନ କି ଠାକୁର ମୂରତି ।
ଏ କଣ୍ଢାର ପରମ୍ପରା ଆମ ତୁମ ମନପରି
ଆଦିମ ଓ ଅପନ୍ତରା
ଶ୍ମଶାନର ଛିଣ୍ଡା ହେଂସ କନ୍ଥା, ସେମାନଙ୍କ ଦେହସାରା
ଠୁକୁଡ଼ା ଧୋବଲା ହାଡ଼, ଶୃଗାଳ ଓ ଶାଗୁଣାଙ୍କ ପଇଁତରା
ସେ ଗାଆଁର କଣଘର ଝିଅଟିର
ଷଠିଘର ବୟୋପ୍ରାପ୍ତ ମାତୃତ୍ୱ ଓ ବୃଦ୍ଧାବସ୍ଥା ପରି
ଅସ୍ପଷ୍ଟ ଓ ମର୍ମନ୍ତୁଦ ।
ଏ କଣ୍ଢା କୌଣସି ବନ୍ଦରୁ ସେଇ ଦୂର ଆଗ୍ନେୟ ଦ୍ବୀପର
ଏବଂ ସମଗ୍ର ଏ ପରିବ୍ୟାପ୍ତି କେଉଁ ଏକ ନିଖୋଜ ବନ୍ଦରର ।

ତୁମେ ଯେବେ ହସିହସି ଚାଲିଛ ଲକ୍ଷ୍ୟରେ
କଣ୍ଢାଟାକୁ କାଳନିକ ଭାବି
ମୁଁ କହିବି କଣ୍ଢାର କାରସାଦି କେତେ
ଏ ତୁମର ଦୈନନ୍ଦିନ ଆଗ୍ରହ ଓ ବେଦନାରେ
ଆଉ ତୁମ କାର୍ଯ୍ୟକଳାପରେ

ତୁମେ ଯେବେ ଧାଇଁଯାଅ ଆଖପାଖ ଉଦ୍ୟାନକୁ ଫୁଲତୋଳି
ବିକଳ ବା ଭାବାବେଶ ହୋଇ
ଫୁଲଙ୍କୁ ଯାବୁଡ଼ି ଧରି କରିବାକୁ ଏକାନ୍ତ ନିଜସ୍ୱ,
ସେ କଣ୍ଟାଟି ଚାଲିଯାଏ ଆକାଙ୍କ୍ଷିତ ଫୁଲ ସଙ୍ଗେ
କଣ୍ଟା ଲାଗେ ଗାଲସ୍ତରେ ସ୍ନାୟୁଙ୍କ ରାଜ୍ୟରେ
ବଡ଼ ମାଛ କାବୁ ହୁଏ କଣ୍ଟିକାଳି ଫିଙ୍କା ଟଣା ପରେ
ସ୍ତବ୍ଧ ତୁମ ଦେହ ଛାଡ଼ ରକ୍ତ ଓ ଆଲୁଅ ସବୁ ଚାଲିଯାନ୍ତି
ଶିଥିଳ ଅବଶ ରାଜ୍ୟେ ଶାନ୍ତ ଆସିଯାଏ
ବହଳ କୁହୁଡ଼ି ଧରି,
କଣ୍ଟା ତା'ର କୁହୁକ ଦେଖାଏ ।



# ରାତିରେ ସମୁଦ୍ର

ଏ ଅନ୍ଧାର ରାତିଟାରେ ଚାହିଁ ସମୁଦ୍ରକୁ
ମୁଁ ଭାବୁଛି ସମୁଦ୍ରଟା ଟାଣୁଅଛି ପାଖକୁ ପାଖକୁ
ଢେଉ ପରେ ଢେଉ ଆସେ ମୃତ୍ୟୁର ଉତ୍ତରୀ
ପରି, ଢାଙ୍କିବାକୁ ଜୀବନର
ପ୍ରତ୍ନତତ୍ତ୍ୱ ଦୂରଦୃଷ୍ଟି ଅଭିଜ୍ଞାନ
ହଳଚଲ ଉର୍ମୀ ଓ ନାଉରୀ
ଏ ସବୁର ସାର ସଞ୍ଚା ନିର୍ଯାସ ଓ ଉପକ୍ରମଣିକା
ସମୟର ଯେଉଁକେତେ ଉଜ୍ଜ୍ୱଳ ମୁହୂର୍ତ୍ତ
ସେ ସବୁକୁ କରବାକୁ କରୁଣା ଓ ଫିକା, ବିଷାକ୍ତ ଓ ପରିତ୍ୟକ୍ତ
ନୀରସ ନଗଣ୍ୟ ।

ସମୁଦ୍ର ଉଦ୍ଧାମ ହେବା, ଫୁଲ ଏବଂ ବେଲପତ୍ରୀ ମଉଳିବା
ପୋକଜୋକ ନିଆଁ ଟାରେ ଜାଣିଶୁଣି ପୋଡ଼ିହେବା
କାରଣଟା ଗୁଢ଼ ଓ ମହାନ
ଆମେ ସବୁ ସେ ସତ୍ୟର ଉପପାଦ୍ୟ ସାମାନ୍ୟ କଥନ ।

ଏ ରାତି, ଏ ଅନ୍ଧକାର, ସମୁଦ୍ରର ଅସରନ୍ତି କୋଳାହଳ
କଳାପାଣି, ଯେ କୌଣସି ଗୋଟେ ରାତି
ସେ ରାତିରେ ଦରବୁଢ଼ା ବାପା ମୋର ଶୂଳପାନ୍ତ
ପଲଙ୍କ ଓ ପିଲଝିଲ, ନୂଆ ଶାଲ ଗୁଆକାତି ଗୁଡ଼ି
ଆଉ ମଧ୍ୟ ତାଙ୍କ ପ୍ରିୟ ବଟୁଆ କୋଥଳୀ
ଆମର ଦୁଷ୍ଟାମି ଲାଗି କାନମୋଡ଼ା ମାଡ଼ଗାଳି
ପଛକର ବଗିଚାରେ ରୋପିଥିବା ଗେଣ୍ଡୁ ଫୁଲ ମଲ୍ଲୀ ଓ ଟଗର
ତିଳକ ଓ ଭାଗବତ ଧୂପଦାନୀ ଗ୍ରନ୍ଥ ରତ୍ନାକର
ଚାହିଁ ଚାହିଁ ମୋ ବୋଉର ଲୁହଭରା ଆଖି
କେତେକଥା ଭାବୁଥିଲେ କହିବାକୁ

ସେ ସବୁକୁ ମାଢ଼ ଯାକ ରଖି
ଖାଲି ଟିକେ କନ୍ଦିଗଲେ ପିଲାମାନେ
ଗୋଳମାଳ କରିବାକୁ ଝୁମୁକା କଣ୍ଢେଇ ଲାଗି
ଜାମା ପେଣ୍ଟ ମଇଳା କରିବାକୁ,
ଆଜି ତୁମେ ତାଙ୍କ କଥା ବୁଝୁଥିବ ପିଲାମାନେ ତୁମକୁ ଲାଗିଲେ
କନ୍ଦିବୋଲି ବୁଝାଇବ କଳଗୋଳ କଲେ ।

ଘଡ଼ିଟିର ଟିକ୍ ଟିକ୍ ସମୟର ଟାପୁ ଶବ୍ଦ ଶୁଣି
ନଗର ଚହିଁକ ଗଲା, ଫାଟକ ପଡ଼ିଲା
ଅତର୍କିତ ଶତ୍ରୁ ଆକ୍ରମଣ
ନୃଶଂସ ଶୋଷଣ, ରାଜ୍ୟରେ ଆତଙ୍କରାଜ
ଘାତକଙ୍କର ବୁଲାଚଲା ଗଳି ଗଳି ଅଗଣା ଅଗଣା
ଘରଆଡ଼େ ଆର୍ତ୍ତନାଦ
ରାଜ୍ୟରେ ପ୍ରମାଦ ।

ସେ ଏକ କୋକୁଆ ଭୟ, ଅସମ୍ଭବ
ତଥାପି ସମ୍ଭବ ।
ସେ ଭୟର ଅଶରୀର ଶିହରଣ
ସେ ଦୁଃଖରୁ ନାହିଁ ପରିତ୍ରାଣ
ସେ ଭୟର ଶେଷ ନାହିଁ, ସମୁଦ୍ରର କୋଳାହଳ
କଳାପାଣି ପରି, ପରିଚିତ
ତଥାପି ଅପରିଚିତ, ଅନିଶ୍ଚିତ, ନିହାତି ନିଶ୍ଚିତ ।
ସେ ଭୟ ଆଦିମ ଭୟ ସେ ଦୁଃଖର ନାହିଁ ଉପଶମ
ସେ ଭୟ ସେ ଶିହରଣ ବଞ୍ଚିବାର ଶେଷ ଓ ପ୍ରଥମ ।



# ଗୋଧି ଗଉଡୁଣୀ

ଦହିହାଣ୍ଡି ମୁହଁ ଖୋଲି ଶଙ୍ଖଚିଲ ପହଣ୍ଡି ମାରୁଛି
ଦହିହାଣ୍ଡି ଚହଲୁଛି ଟବଟବ ନଶ ଚୁଟେ ଭୂଆ ବଲେଇଟା
ତରବରେ ଖେପିଯାଏ ଖାଲଢିପ ପାଣି କି କାଦୁଅ
କଅଁଳିଆ କଥା କହେ ଦହି ନିଅ ଘର ଭଲ ଦହି
ଟ୍ଳୁଟ ଟ୍ଳୁଟ କଳାଆଖି ତା ଭିତରେ ଅସଂଖ୍ୟ ଚାହାଁଣୀ
ନିଧଡ଼କେ ଗାଆଁ ଦାଣ୍ଡେ ମାଡ଼ିଚାଲେ ଏଇ ଆମ ଗୋଧି ଗଉଡୁଣୀ ।

ଜୀବନ ତା' ଲୁଣିପାଣି ଭାସିଯାଏ ବୁଡ଼ିଯାଏ ଉବୁଟୁବୁ ହୁଏ
ଆକୁଳେ ମିନତି କରେ ଘର ଶୋଷ ବଞ୍ଚିବାକୁ ଚାହେଁ
ଆହେ ପ୍ରଭୁ ଜଳରାଜା ଦୟାକରି ନଦୀ ହୋଇଯାଅ
ନଇଲେ ବା ଶୁଖି ଯାଅ ଏତେ ପାଣି ଦରକାର ନାହିଁ
ଆହେ ଯେତେ ନଦୀଝର ମିଶ ତୁମେ ସାଗର ହୃଦରେ
ଭୁଲିଯାଇଁ ନିଜଗୁଣ ଅସ୍ତିତ୍ୱ ହରାଅ ପରଧର୍ମ ଅତି ଭୟାବହ
ଆନିକଟେ ଜଳବଢ଼େ ଜିଭରେ କରଡଗୁଣ୍ଡ ନିଶ୍ୱାସରେ ଜଳକଣା ନାହିଁ
ପସରାରେ ଦହି ନାହିଁ ଯାହା ଥିଲା ବିରାଡ଼ି ଖାଇଲା
ହୃଦରେ ଅସୀମ ଜ୍ୱାଳା ପାଣି ଟୋପେ ପାଣି ପାଣି ପାଣି
ହକଲେ ମିନତି କରେ ଶୋଷିଲା ଏ ଗୋଧି ଗଉଡୁଣୀ ।

ଗାଈଗୋଠ ଫେରିଲାନି ରାତିହେଲା ଜହ୍ନିଫୁଲ ମଞ୍ଚାରେ ଫୁଟିଲା
କଦମ୍ବ ଗଛରେ ଫୁଲ ଯମୁନାଟା ଉଚ୍ଛୁଳୁଛି ଚନ୍ଦ୍ରସେଣା ହାଟକୁ ଯାଇଛି
ଦିନ ପରେ ଦିନ ଯାଏ ରାତି ପରେ ରାତି ବଡ଼ଭୋର ମୁହଁସଞ୍ଜ ହୁଏ
କୋଇଲି ଲୋ କେଶବ ଯେ ମଥୁରାକୁ ଗଲା ଆଉ କେବେ ବାହୁଡ଼ିବ କହ
ସମସ୍ତେ ଯାଆନ୍ତି କହି ଆସନ୍ତିନି କେହି ଚାହିଁ ଚାହିଁ
ଲୁହ ଶୁଖେ ରଙ୍ଗ ଫିକାପଡ଼େ
ଅବଧୂତ ଫେରିଚାହେଁ
ପିଙ୍ଗଳା ବେଶ୍ୟା ଶୋଇନି ଦୀପ ଛାଡ଼ ମିଞ୍ଜିମିଞ୍ଜି ଜଳେ
ଇଏ ସବୁ ବଡ଼ ବଡ଼ କଥା ମାନେ କଣ ଏହା ସବୁ ଜାଣି
ପସରାରେ ମୁହଁ ଗୁଞ୍ଜି ବାହୁନିଲା ନିରମାଖି ଗୋଧି ଗଉଡୁଣୀ ।

ସମ୍ପୁଠା ଥଙ୍ଗେଇଲ୍ ପଣିଦେଲ୍ ଗୁଇଦେଲ୍ ଫଳ କାଟି ଦେଲ୍
ଶୁଭ ମହୁରି ବାଜ୍‌ଲା ପ୍ରଜାପତି ଘଟମୂନ୍ ନଳ ଦମୟନ୍ତୀ
ବେଙ୍ଗରାଣୀ ବାହାହବ ଖରହୋଇ ବରଷା ହେଉଛି
ପୂରୁବରେ ଇନ୍ଦ୍ରଧନୁ ବାହାରଛି ଉଇହୁଙ୍କା ପାଖୁ
ହୁଳହୁଳ ଅର୍ଘ୍ୟଥାଳୀ ବର ତୁମେ କରବ ବରଣୀ
ଓଢ଼ଣା ପକେଇ ଆଜି ବାହାହବ ଗୋଧି ଗଉଡୁଣୀ ।

ବସନ୍ତ ଆସିଛି ଆଜ ଗୋଧିଘର ଗୃହକଡ଼ ଆଜି ନୂଆ ବଜାର ବସିଛି
ଇନ୍ଦ୍ରଧନୁ ଗୃନ୍ଦ୍ର ଆଡରେ ମିଠାମିଠା ଜହ୍ନରାତି ଲହଡ଼ି ଭାଙ୍ଗୁଛି
ଗାଆଁ ଦାଣ୍ଡେ କଅଁଳା ବାଛୁରୀଙ୍କର ମାରଥନ
ଗୋଧିଘର କାଳଗାଈ ପାଠ ଆଜ ଉଭାର ହୋଇଛି
ବରଷକେ ଏହିପରି ବସନ୍ତ ଆସଇ ଥରେ
ଥୁମ୍ବାଗଛେ କଅଁଳଆ ତମ୍ବା ପନ ନନ୍ଧ ହୋଇଯାଏ
ବଗିଚ୍ଛ ବେଲୁନ୍ ଭଳକ ଆମ୍ବଗଛ ଅନ୍ତସତ୍ତ୍ୱା ହୁଏ
ପାହାଡରେ ଘୋଡ଼ାବାନ୍ଧି ରଜାପୁଅ ଠିଆହୁଏ ରଜାଝିଅ ପୋଖରୀ ତୁଠରେ
ଆଉ କେଉଁ ଅରଣ୍ୟରେ ସାଧବ କନିଆଁ ଦେଖେ
ବୋଇତ ଫେରି ଆସିଛି ବହୁ ବର୍ଷ ପରେ
ବୋର୍ଣ୍ଣିଓ ଦ୍ୱୀପରେ ଦିନେ ବୋଇତ ଲାଗିବ
ଇଏ ରାଜା ସିଏ ହବ ରାଣୀ
ନୂଆ ବଜାରରେ ଦିନେ ବସି ବସି ଭାବୁଥିଲା ଗୋଧି ଗଉଡୁଣୀ ।

ଫଳ୍ କର ଶାଗୁଣାଟା ବସିଗଲା ଦୋହଲଲ ନଡ଼ିଆ ବାହୁଙ୍ଗା
ବଣିବସା ଦୋହଲାଲା ବଣିଛୁଆ ଉଡ୍ଡୁଙ୍କ ଗୁହାଁଳ
ଶାଗୁଣାର ତୀକ୍ଷ୍ଣ ନଖ ବଙ୍କା ଥଣ୍ଟ ଡମାଡମା ଆଖି
ଡରଡ଼ଠା ବାହୁନଲ ମ୍ୟାଉଁ ମ୍ୟାଉଁ ବଣି ହଅ ଦାନ୍ତ ମୋର
ଖୋଟବଇ ହଉଛି । ସ୍ୱାମୀ ମୋର ଭଲ ହେଉ
ଗଞ୍ଜା ଦେବ ବୋଦା ଦେବ ପଣା ଦେବ ମା’ ଠାକୁରାଣୀ
ସ୍ୱାମୀ ମୁଣ୍ଡ କୋଡ଼େ ରଖି ମନାସିଲା ଗୋଧି ଗଉଡୁଣୀ ।

ରାମନାମ ସତ୍ୟ ହବ ସେ କଉଡ଼ଠା ନ ହସି ପଡ଼ିଲା
ତୁମେ ଯାଇଁ ପାଣିଗୁଟି ଚେତାକର ଅଭାଗୀ ସେ ଭାଗ୍ୟ ତାର କାହିଁ

ଶିଆଳ ରଡ଼ିଲେ ଆର କଆବଣେ ରାତି ଜମା ଦ୍ୱିତୀୟ ପ୍ରହର
ଗୋଧି ତମେ ଆଜ ରାତି ଶୋଇବନି ତମର ସେ ନଜର ମଣିଷ
ନଇଆର ବୁଢ଼ାଅଜା କୁଠା ପାନ ପାକୁଳି କରୁଛି
ବନ୍ଧ୍ୟମାଆ ବୁଝାଉଛି ମଥାରେ ତା ଟିକାଏ ସିନ୍ଦୂର
ନଗୋଧି କନ୍ତୁ ଢୋଳାଉଛି ରାତି ଜମା ଅଳପ ସରିଚ
ଗୋଧି ତମେ ଆଜ ରାତି ଶୋଇବନି ତମର ପା ଘଇତା ମରିଚ ।

ଇତିହାସ ଉଲ୍କିମାରେ କାମନାର ପ୍ରତ୍ୟେକ ଗଳରେ
ହରପ୍‌ପାର ପୋତା ନଈ ଫୁଜିୟାମା ନାଆଁ ଉଖାରୁଛି
ଆଣ୍ଠା କମେଇ ଦିଅ ତେଲକଡ଼ା ଟବଟବ ଫୁଟେ
ତେଲରେ ପକାନି ପାଣି ଆଣ୍ଠରେ ପକାଅ ନାଆଁ କାଳେ ମଥାନ ଧରିବ
କୃଷ୍ଣସାର ଜାଣି ନେଇ ବାସ୍ନା ତମ ନାଭି ମଣ୍ଡଳରେ
ଆଖିପତା ମୁଦି ଆସେ କେତେ ରାତି ନିଷ୍ଟପୁ ଶୋଇବ ।

ଡାକ୍ତର ଯେହେତୁ ଆମେ, ଆମେ ଜାଣୁ
ବଞ୍ଚିବାର ମାନେ କଣ, ମାନେ କଣ ଏଇ ଦୁନିଆର
ଏ ରୋଗର କାରଣ ଓ ସେ ରୋଗର ନିଦାନକୁ ଜାଣୁ
ତୁମର ହୋ କସ ଗଲା ଆମେ ଯଦି ବଣି ମାରି ହରିଡ଼ ପୋଷିଲୁ
ହନୁଙ୍କୁ ଶୀକାର କରି ଆମେ ଯଦି ଯୋଡାଙ୍କର ରୋଗ ଭଲକଲୁ
ନର୍କର ଖୋଲିବ ଦ୍ୱାର କାଳରାଜା କୁହାଟିବ କାଳଫାଶ ଧରି
ଶିମୁଳୀ ଗଛରେ ବାନ୍ଧି କୁମ୍ଭୀପାକ ଖାତରେ ପକାଅ
ବୁଢ଼ୀମାଆ କହୁଥିଲା ମନପବନ କଠାଉ ରଜ ଝିଅ ବୁଢ଼ୀ ଅସୁରୁଣୀ
ସବୁକଣ ସନ୍ତକଥା – କାନ୍ଦକାନ୍ଦ ପ୍ରଶ୍ନକରେ ଅଭାଗିନୀ ଗୋଧି ଗଉଡୁଣୀ

ଦହି ନବ ଦୁଧ ନବ ଛେନା ନବ ପସରାକୁ ନବ
ବିକିବି ମୁଁ ସବୁ ଆଜି ରାସ୍ତାକଡ଼େ ନିଲାମ୍ କରିବ
ଓଜନ ଜାଣିନି ମୁହିଁ ତୁମେ ମୋର ଗରାଖ ଈଶ୍ୱର
ନିକ୍ତିନାହିଁ ସାଜନାହିଁ ହୁଣ୍ଡା ମୂଲ ମୂଲେଇବ ଅଛି
ଏଇ କ୍ଷୀର ଖାଣ୍ଟି କ୍ଷୀର ବରକ୍ଷୀର ମିଶାଇନି ପାଣି
ନିଧଡ଼କେ ଗାଆ ଦାଣ୍ଡେ ଡାକଗୁଡ଼େ ଗୋଧି ଗଉଡୁଣୀ ।

# ସର୍କସର ହାତୀ

ଜାଣିନୁରେ ପୁଅ ମୋର ଦୁନିଆଁ ଟା ଚଳାଉଛି
ଅରଣା ମଇଁଷି
ଯେଣେ ପାରେ ତେଣେ ଯାଏ ଧସି ।

ସେ ଏକ ଅବୋଧ ଶିଶୁ ନିଃସହାୟ ନଗ୍ନ ପରିଚର୍ଯ୍ୟା
ସାମୟିକ ଏକ ମନର କ୍ଷିପ୍ରତା
ଆକଣ୍ଠ ଭୋଜନ ଏବଂ ସୁଶାନ୍ତ ବିଶ୍ରାମ ପରେ
ସେ ଭୁଲିଲେ ଧୀରେ ଧୀରେ ଗୁହାଁ ଗୁହାଁ
ଅରଣ୍ୟର ଗଭୀରତା ନୈଶ ଅନ୍ଧକାର
ଜଳାରଣ୍ୟେ କୁମ୍ଭୀରଙ୍କ ବଂଶ ବୃଦ୍ଧି
ବଂଶନାଶ ବଂଶ ଚିରନ୍ତନ
ଏବଂ ଆଉ କେତେ ସମୟର ବାଜ୍ୟାପ୍ତ ସମ୍ପତ୍ତି ।

ମନରେ ମରିଛି ଆଶା କଳ୍ପନାରୁ ସରିଛି ଉଚ୍ଛ୍ୱାସ
ଉଦ୍ଦାମ ଲହଡ଼ି ଆଜ ସମ୍ମାନ ଲଭିଲଣି ଯଜ୍ଞଶାଳ ଧୂନ
ପିଶାଚୀଙ୍କ ହାଡ଼ ନାଚ ଚଣ୍ଡାମୁଣ୍ଡା ଚାମୁଣ୍ଡାଙ୍କ ବିକୃତ ତାଣ୍ଡବ
ଏଠି ସେଠି ହାହାକାର ନଅଙ୍କର କରୁଣ ଗୁହାଣୀ ।
କେତେ ଦିନ କେ ବଞ୍ଚିବ କଣ୍ଢେଇଙ୍କୁ ଗେଲକରି
ମିଛ ମିଛ ଜୀବନ୍ୟାସ ଦେଇ
କେତେ ଦିନ କେ ବଞ୍ଚିବ ସେ ଆହତ ମନ ନେଇ ବ୍ୟଥିତ ବାସନା
କଢିଟାକୁ ଫୁଲ ଧରିନେଇ ମନେ ମନେ ରାଜାରାଣୀ ଭାବ
କେତେ କାଳ ସେ ବଞ୍ଚିବେ ଅଙ୍କୁଶବଦ୍ଧ ପରେ ସହିସହି ସେଭଳି ଯନ୍ତ୍ରଣା
ପେଛା ପେଛା କଡି ଯନ୍ଦ କୁହୁଡ଼ିରେ ଘଷିଗଲେ ଝଡ଼ିଗଲେ
ସବୁ କଷିଫଳ
ଆର୍ଥିକ ଅବସ୍ଥା ତେଣୁ ଭଲନାହିଁ
ଋଣଭାର ବଢିପାରେ ଜଗିରଖି ଚଳ ।

ଐଶାନ୍ୟ କୋଣରେ ମେଘ ଏସ୍ତୁଅ କି ଇନ୍ଦ୍ରଧନୁ ସତ୍ୟ କି ସୁନ୍ଦର
ଆକାଶଟା ହୋଇପାରେ ବାବନା ଖଣ୍ଡିଆ ଭୂତ ସଙ୍ଗେ ସଙ୍ଗେ
ରଙ୍ଗ ବଦଳାଇ ଦୟାମାୟା ନାହିଁ ତାର
ପାଲବଣ୍ଡା ମନ୍ତ୍ରୀ କିମ୍ବା ନରପେଷ ବଗୁରକ ଭଳି
ମୃତ୍ୟୁ କିମ୍ବା ଆଜୀବନ କାରାଦଣ୍ଡ ଦେଇପାରେ
ଯଦିଚ ନଲ୍ଲୀଦ ତୁମେ—ପାଟିବୁଜ କାନ୍ଦୁଥାଅ
ଘରେ ମୋର ବୁଢ଼ା ବାପା ବୋଉ ଆଉ ଗୃରଟି ପରାଣି
ଉପାସରେ ଗୃହିଁ ଥିବେ କହୁନାହିଁ ଚୁଲି ଜଳିବାକୁ
ମୁଁ କାହାକୁ ମାରି ନାହିଁ, ମାରିବାକୁ ଇଚ୍ଛା କରିନାହିଁ
ମୁଁ କିଛି ଚୋରାଇ ନାହିଁ, ଏପରି କଷଣ ମଧ୍ୟେ
ଚୋରାଇବା ଆଶା କରିନାହିଁ ।
କିଏ ଶୁଣେ ତୁମକଥା—ଆକାଶ ନା ବଗୁରକ କୃଷ୍ଣ ନ ଶ୍ୱଶୁର
କେ ଶୁଣୁଛି କାହାକଥା କେ ଯଦି ଚିରାଉଥାଏ ମରିଗଲି
ମୋତେ ରକ୍ଷାକର ।

ଏ ବସ୍ତିରେ ଯେବେ ଥରେ ନିଆଁ ଲାଗେ
ଜଳି ଉଠେ ଏ ଖାଣ୍ଡବ ସ୍ଥା ପେଟର ଅସଂଖ୍ୟ ଦୁନିଆଁ
ଛଡ଼ ସବୁ ପବନରେ ଝୁଲୁଝୁଲୁ ଜଳିଯାନ୍ତି
ରୋଷ୍ଟ ହୋନ୍ତି ତାଙ୍କ ମଧ୍ୟେ ଚଇଁ ଚଇଁ ଲାଲଥଣ୍ଟ ଛୁଆ
କିଏ ଯିବ କେଣେ ବାବୁ ପ୍ରାର୍ଥୀ ଶର ତାରବାଡ଼ ଡେଇଁ
କେଣେ ଯିବେ ହରିଣୀ ଓ ଛଳଗାଈ ଉପ୍ସାଳୁ ଚଢ଼େଇ
ତେଣୁ ସବୁ ଜଳିଯାଏ ସବୁ ଆଶା ଛିନ୍ନଛତ୍ର ହୁଏ
ପାଣିର ବାହୁଲ୍ୟ ନାହିଁ ଲଢ଼ିବାର ଆଭିଜାତ୍ୟ ନାହିଁ
ପ୍ରେମ ପାରାପୁଣ କିମ୍ବା ଦାର୍ଶନିକ ସାନ୍ତ୍ୱନାର ସତ୍ତା ମଧ୍ୟ ନାହିଁ
ଅଛି ଖାଲି କୋରଡ଼ଗତ ଆଖିଙ୍କ ସତୃଷ୍ଣ ଚାହାଣୀ
କିଛି ଦିଅ ଗିଳିବାକୁ ପେଟଟା ଅଝଟ ଭାରି ଅତ୍ୟନ୍ତ ନିର୍ଦ୍ଦୟ
ସେ କିଛି ଜାଣେନା ରୋଗ ଅଜୀର୍ଣ୍ଣ କି ଅଗ୍ନିମାନ୍ଦ୍ୟ
ଅବୁଝା ବାଳକ ପରି ଦିନରାତି ଉଣ୍ଡାଳୁଛି
ତା ବୋଉର ଶୁଖା ଚମ ସ୍ତନ

ସେ କାନ୍ଦୁଛି ଅଫଟ ସେ କହେଁ କହିଁ
ଉଭୟେ ବୁଝନ୍ତି ତାଙ୍କ ମାଂସର ଦଂଶନ ।

ଆମେ ଖାଲି ଦେଖୁଛୁଁ ଅନ୍ଧାରରୁ ଡିବି ଆଲୁଅରୁ
ରଥ ସବୁ ଗଡ଼ୁଛନ୍ତି ଘର୍‌ଘର୍‌ ତା' ପଛେ ତା' ପଛେ
ସୂର୍ଯ୍ୟରଥ ନନ୍ଦୀଘୋଷ ତାଳଧ୍ୱଜ ଧନୁର୍ବର୍ଦ୍ଧ । ଖଣ୍ଡାଧର ଅକ୍ଷୟତୂଣୀର
ସୁଦକ୍ଷ ସାରଥୀ ଧର ନଳରାଜା ଶ୍ରୀକୃଷ୍ଣ ସାତ୍ୟକ
ବୀରମାନେ ଧାଉଁଛନ୍ତି ଯୁଦ୍ଧକର ଗଡ଼ ଜିଣିବାକୁ
ଆମେ ଖାଲି ଦେଖୁଛୁଁ ଲୁଚିଛପି
ବୁଦାତଳେ ପଥର ସନ୍ଧରେ
ଘର ଭୟ ବର୍ଚ୍ଛା ଭୟ ଖଣ୍ଡାଭୟ
ରଥଚକ ଚଢି ଯାଇପାରେ ।

ଏକଥା ସତଯେ ପ୍ରାପ୍ୟ ପରାଜୟ ନହାତ ବାସ୍ତବ
ଦର୍ଶନ ତାକ୍ଷଲ୍ୟ ଏଠି, ସ୍ୱପ୍ନସବୁ
କାଚର ଠେକୁଆ ପରି ହାତୁ ପଡ଼ି ଭାଙ୍ଗି ଯାନ୍ତି
ମନଟା ଚଲେଇ ଉଠେ ନରୁପାୟ କାହାର ବା ଦୋଷ
ଦରତ୍ରିଡ଼ା କଙ୍କିପରି ମନମାନେ ଡର୍‌ହୋଇ ପଡ଼ିଯାନ୍ତି
ଛଟପଟ ହୋଇ
ପରାଜୟ ବର୍ଣ୍ଣରହେ ପୋଡ଼ା ଚମ ଚ଼ନ ଲିପି ଲିପି
ଅଳୀକ ସାନ୍ତ୍ୱନା ଦେଇ ଚକୋଲେଟ ବେଲୁନ ଦେଖାଇ
ବୀରମାନେ ନେଣ୍ଡାହୋଇ ପଡ଼ିଯାନ୍ତି
ଲଙ୍ଗୁଡ଼ରେ ଥୋଡ଼ି ଗୁଞ୍ଜି ମାଡ଼ି ଯାକ ଅସଂଖ୍ୟ ଯନ୍ତ୍ରଣା
ତେଜ୍ୟାକର ଅଖ୍ୟାତର ଖାନଦାନୀ ମାନ ଅଭିମାନ
ଭୁଲିଯାଇଁ ସନ୍ଦେହ ସମ୍ପର୍କ ଏବଂ ଦୟା କୃତଜ୍ଞତା ।
ବସ୍ତି ଆଜ ମନ ସବୁ ବକଲାଙ୍ଗ
ଉଦ୍‌ଯାପିତ ଯକ୍ଷଶାଳ ତାତ
ଅସ୍ପଷ୍ଟ ବର୍ଣ୍ଣବା କଥା
ମୁହଁପୋଛି ଖୁଲୁଛନ୍ତି ସର୍କସର ହାଣ୍ଡି ।



# ସର୍ଜନା

ଅନନ୍ତ ଅକ୍ଷତ । ଶବ୍ଦାକ୍ଷତ
ସଂକୁଚିତ ପ୍ରସାରିତ ପ୍ରାଚୀନ ଓ ବର୍ତ୍ତମାନ
ଜଳୌକା ଓ ଜଳାର୍ଣ୍ଣବ, ଅନ୍ଧକାର ଅନ୍ଧକାର
ସଂସାରର ବ୍ରହ୍ମାଣ୍ଡର ଆଦିମ ଓଁକାର

ଆଦେଶିଲେ ଆଦିଦେବ, ଆଦିମାତା ଗଢ଼ ଏ ସଂସାର
ଋଶଆଡ଼ ଜଳମଧ୍ୟ କାଳରାଶି ନାହିଁ କାହିଁ
ସତ୍ତ୍ୱ ଆଲୋକର । ନିଃଶବ୍ଦ ଏ ଅଥର୍ବ ବ୍ରହ୍ମାଣ୍ଡ ଯନ୍ତ୍ରୀ
ଅନ୍ଧକାର ଗିଳିଦିଏ ଅନ୍ଧକାର ଜଳସ୍ଥଳ ସ୍ଥାବର ଜଙ୍ଗମ
ପ୍ରକୃତି ଅନୂଢ଼ା ଏବଂ ପରାଣମୁଖୀ ପରାଗ ସଙ୍ଗମ
ଏ ମାବର ଆଲୋଡ଼ନ କାରଣିକ ଆଗାମୀର, ଅବଶ୍ୟମ୍ଭାବୀର
ଅଦୃଶ୍ୟ କେ କାନ୍ଥଘଡ଼ି କରୁଥିବ ଟିକ୍‌ଟିକ୍ ଶବ୍ଦ ମାନଙ୍କର ।

ଯେଉଁ ଏକ ଉତ୍କୃଷ୍ଟ ସମୟ
ଜନ୍ମହେଲେ ବ୍ରହ୍ମା ମହୋଦୟ
କାମନା ସ୍ଥଗିତ କମ୍ବା ନବାସିତ, ସ୍ଥିରୀକୃତ
ବହୁଗୁଡ଼ି କୃଚ୍ଛ୍ର କାର୍ଯ୍ୟ ପରେ ।
ତାଳ କମଣ୍ଡଳୁ ଧରି ବ୍ରହ୍ମା ଯଦି ଠିଆହୋନ୍ତି
ଛକ ରାସ୍ତା ଦେଖି, ନିହାତି ନିଶ୍ଚିତ ଭାବେ
ସେ ଜାଣନ୍ତି କେଉଁ ରାସ୍ତା କେଉଁଠି ବାଟ ଯାଏ
କେଉଁ ବାଟ କେଣେ ନିଏ କେ ରାସ୍ତାରେ ବେଶୀ ଜଞ୍ଝା
ବେଶୀ ଧକ୍କା ବହୁଗୁଡ଼େ ଖାଲଢିପ ଥାଏ
ଯେଣୁ ତାଙ୍କ ଭିତରକୁ ଆଖି
କନ୍ଦର୍ପ ଆଡ଼େଇ ଟଲି ଫୁଲ୍‌ଶର କାଖତଳେ ଯାକ ।
ତୁମେ ତ ଆଦିମ ଏବଂ ବୟୋଜ୍ୟେଷ୍ଠ ହେ ବ୍ରହ୍ମନ୍
ସୃଜ ଏଇ ସସାଗରା ଧରା, ତା ମଧ୍ୟରେ ଅଙ୍ଗରଙ୍ଗ
ବିକଳାଙ୍ଗ ଜୀବ ଦେବ ମାନବ ଓ ସେମାନଙ୍କ ଭାବ, ଅନୁଭବ
ସେମାନଙ୍କ ଉତ୍କଣ୍ଠା ସ୍ୱଭାବ, ଭବ ଏବଂ ପରାଭବ ।

ମନାସିଲେ ଆଦ୍ୟଶକ୍ତି ଇଚ୍ଛାଶକ୍ତି ରଜଗୁଣ ବନ୍ଧି
ଜନ୍ମହେଲେ ଭଗବାନ ମୂର୍ତ୍ତିମନ୍ତ ହୋଇ ।
ସୁନ୍ଦର ସୁଠାମ ଦେହ ରତ୍ନର ମୁକୁଟ ଏବଂ ପଟପାଟୀ
ଶଙ୍ଖ ଚକ୍ର ଗଦା ପଦ୍ମ ଚତୁର୍ଦ୍ଧାମୂରତି
ମାୟାବୀ ଓ ଅନ୍ତର୍ଯ୍ୟାମୀ
ବ୍ରହ୍ମାଣ୍ଡର ମନ ମାନଙ୍କର ।

ମାହେନ୍ଦ୍ର ସମୟ ଦେଖି ପଞ୍ଚଶର ଆଗୁସାର ହେଲା
ଗୁଣରେ ଟଙ୍କାର ଦେଲା ଅଭିମାନ କଲା
ଶରମାନେ ଫୁଲ ହେଲେ ଶରମାନେ ନଫୁଟି ଫୁଟିଲେ
ଶରମାନେ ଯୌବନ ଓ କାମନାର ସାମଗ୍ରୀ ଓ ସରଞ୍ଜାମ ହେଲେ
ଚାପରେ
ବିସ୍ମିତ ଓ ବ୍ୟସ୍ତବ୍ୟସ୍ତ କନ୍ଦର୍ପ ଦେଖଇ
ଶରସବୁ ତା' ଆଡ଼କୁ ଫେରୁଛନ୍ତି ଅକ୍ଟୋପସ୍ ହୋଇ
ଆଦେଶିଲେ ଦେବୀ,
ହେ ମାୟାବୀ, ଏ ସୃଷ୍ଟିର ହାନିଲାଭ ବୁଝ
ଏ ଯେଉଁ ସବୁଜ ବ୍ୟାପ୍ତି, ସବୁଜ ଏ ଜୀବଜନ୍ତୁ
ସବୁଜ ଏ ବୃକ୍ଷଲତା ସବୁଜ ଏ ଜଳସ୍ଥଳ
ସବୁଜ ସାମ୍ରାଜ୍ୟ
ପୁଷ୍ପଧନ୍ୱେ ଗୋଟିଏ କଥା ମନେ ରଖିପାର
ଏ ମାନଙ୍କୁ ପ୍ରତିପାଳ
ତୁମେ ହେଲ ରାଜା ଏ ରାଜ୍ୟର ।

ବୈରାଗ୍ୟ କାମନା ସବୁ କରି ଏକାକାର
ଜନ୍ମ ହେଲେ ଶମ୍ଭୁ ମହେଶ୍ୱର
ଡମ୍ବରୁ ବାଜିଲା ଦ୍ରବ୍ୟ ଅନ୍ତରୀକ୍ଷେ, ସୃଷ୍ଟି ହେଲା
ଶବ୍ଦର ଆକାଶ । ଶବ୍ଦ କଲା ପ୍ରଜ୍ଞାଙ୍କର
ଲୌକିକ ପ୍ରକାଶ ।
ସୃଷ୍ଟିର ପ୍ରଥମ ଶବ୍ଦ ସୃଷ୍ଟି କଲା ତୀବ୍ର ପ୍ରତିଧ୍ୱନି
ସୃଷ୍ଟି ହେଲା ଧ୍ୱନିର ମେଦିନୀ ।
ଡ଼ମ୍ବ ଡ଼ମ୍ବ ଡ଼ମ୍ବରୁର ମୂର୍ଦ୍ଧ ମୂର୍ଦ୍ଧ ନାଦ
ତାଣ୍ଡବର ଶ୍ରମକ୍ଳାନ୍ତ ଲାସ୍ୟ ଏବଂ ଓଁକାରର ଅପୂର୍ବ ଝଙ୍କାର

ଶେତାଙ୍ଗ ଓ ଜଟାଧାରୀ, ତ୍ରିଶୂଳ ଓ ପାଶୁପତ ଅସ୍ତ୍ର ତୂଣୀର
ସ୍ୱପ୍ନରେ ଓ ସନ୍ତୋଷରେ ପରିପୂର୍ଣ୍ଣ ଚକ୍ଷୁଦ୍ୱୟ ଅର୍ଦ୍ଧ ଉନ୍ମିଳିତ
ଦେଖି ଦେବୀ ହେଲେ ଦ୍ରବୀଭୂତ ।

ଇଚ୍ଛାର ପ୍ରଥମ ଶକ୍ତି, କନ୍ଦର୍ପ ପ୍ରାକର୍ମ
ଜମ୍ଭା ପାଞ୍ଚଫୁଲ ଶରଙ୍କ ଜମିଆ
ବ୍ରହ୍ମାଣ୍ଡ ଓଁ ବ୍ରହ୍ମା ବସ୍ତୁ ଦେଲେ ନାଦା
ଗୃହଆଡ଼ ଲଲଫଣା ହୁତ୍ହୁତ୍ ନାଆଁ
ଦେବୀଙ୍କୁ ଗୃହ୍ନିଁଲେ ଶିବ, ଶିବଙ୍କୁ ଗୃହ୍ନିଁଲେ ଦେବୀ
ଦୁହେଁ ହଁ'ଙ୍କି ଦୃଶ୍ୟମାନ, ବପୁମାନ ପାଇ, ମନାସିଲେ
କେଉଁ ଏକ ସ୍ୱର୍ଗୀୟ ଆନନ୍ଦ ।
ପାଇବାଠା କେବେହେ ନୁହେଁ ମନ୍ଦ ।

ବିହ୍ୱଳେ ନାଚିଲେ ଯେତେ ଦୃଶ୍ୟମାନ, ଶବ୍ଦମାନ, ମୂହ୍ୟମାଣ
ଜାନ୍ତବ ବା ମାନବିକ ଐଶ୍ୱରିକ
ଆନନ୍ଦର ପ୍ରାବଲ୍ୟ ଓ ପରାକାଷ୍ଠା ଦେଖି
ପ୍ରକୃତି ପୁରୁଷଙ୍କର ସଂଯୋଗ ତାଣ୍ଡବ
ଏବଂ ମହାଭବ, କାମନାର ଉଦ୍ବର୍ତ୍ତନ
ବ୍ରହ୍ମାଣ୍ଡର ପରିବୃଦ୍ଧି ପରିପାଳନରେ
ଯେ କାଳେ ଥମିଲା ଝଡ଼
ସାଗର ତରଙ୍ଗ ସବୁ ପ୍ରକୃତିସ୍ଥ ହୋଇ
ପରସ୍ପର ମନାସିଲେ
ସେ ଝଡ଼ର ଆଗମନ ପାଇଁ ।



# ଯାତ୍ରୀ ଓ ବନ୍ଦର

ସେ ଦିନ ନାହିଁ ଆଉ ଯେତେବେଳେ ପାରୁଥିଲି ଲେଖି
ଆକାଶରେ ଛଗ୍ର କମ୍ପା ପୋଖରୀରେ ମାଳକଇଁ ଦେଖି ।
ମୋ ଆଶାର ସୂର୍ଯ୍ୟ ଟେକେ ଝିଙ୍କୁଥିଲା ଭୁଲାର ବାଦଲ
ଠାଙ୍ଗର ମାଟିରେ କେତେ ଫାଟୁଥିଲା ମୁକ୍ତାପାଣି ଝରଆଡ଼େ ସୁନାର ଫସଲ ।

ସେ ବେଳେ ନ ଥିଲି ଜାଣି ବର୍ତ୍ତମାନ ପାରୁନଛି ଜାଣି
କଏ ମାୟା ମରୀଚିକା କଏ ଠିକ୍ ପାଣି ।
ଆଶାରଖି ଧାଇଁବାରେ ଅର୍ଥ ଥିଲା, ଆଗରେ ମୋ କାଛୁ କଥା ଅଛୁ
ଯାହା ପାଇଁ ଧାଇଁ ଧାଇଁ ଏତେ ମୁଁ ନପ୍ରାନ୍ତ ହେଉଛି ।

ମୋ ସାମ୍ରାଜ୍ୟ ଖୁସିଥିଲା ସୁନାର ଫସଲ ଏବଂ ମୁକ୍ତାପାଣି ମାଳକଇଁ ଧରି
ସମ୍ରାଟ ମୁଁ ଗୃହ ଥିଲି ନୂଆ ରାଜ୍ୟ ଅଧିକାର କରି ।
ଏ ଯେଉଁ ବନ୍ଦର ପାଖେ ଯାତ୍ରୀ ଭାବେ ହୋଇଅଛି ଠିଆ
ଡେଉମାନେ ନାଚୁଛନ୍ତି ମୁଖାପିନ୍ଧି ଭୂତ କି ଗଧିଆ ।

ଜଣୁଛି ଅଭିଜ୍ଞ ହୋଇ ବର୍ଷ ଏକ ନାଉରିଆ ହେବ
ଦୁର୍ଦ୍ଦାନ୍ତ ଡେଉମାନଙ୍କୁ କାଳ କ୍ରମେ ବଶ କରାଇବ ।



# ପାର୍ବତ୍ୟ ପ୍ରେରଣା

ମନକୁ ମୋ ବୁଝାଇଲି, ଆରେ ମନ,
କାହିଁ ଏତେ ଛନ ଛନ, ବ୍ୟସ୍ତବ୍ୟସ୍ତ
ସବୁ ତୁ ପାଇବୁ ଦେଖି
ଯଦି ତୁ ଓହରି ପାରୁ ଟିକିଏ ପାଖରୁ, ଧନ ଜନ
ସ୍ନେହ ତ୍ୟାଗ ପରବାଙ୍କ୍ଷା ମାନ ଅପମାନ ।

ଏ ଘରର ସିମେଣ୍ଟ ଚଟାଣ
ତା ଉପରେ ରଖି ଦେଖ ମେଞ୍ଚେ ଗୁଡ଼, ଜନ୍ଦା ଓ ପିମ୍ପୁଡ଼ି
ଖାଲି ଘେରିଯିବେ ଝଲଝଲ, ପଗୁଳିବେ
ତୋ ଘରର ଭଲମନ୍ଦ, ହାଲଚାଲ, ତୋ ସମ୍ଭ୍ରମ କଣ୍ଠଭୂଷଣ
କାନ୍ଧ ଦେବେ ହସି ଦେବେ ଜଗିରହି ବୋହି ନେବେ
ସାଧ୍ୟ ମୁତାବକ, ତାକୁ ଦେଖି ଗୁଡ଼ ଖାଇବେ,
ଏତ ବଡ଼ ଖୁସିର ଖବର
ଜନ୍ଦା ଓ ପିମ୍ପୁଡ଼ିମାନେ କେତେ ଆପଣାର ।

ଆରେ ମନ, ଯଦି ତୋର ଇଚ୍ଛା ହୁଏ, ପ୍ରକୃତିସ୍ଥ ହୋଇ
ଥରେ ଅନୁଧ୍ୟାନ କର, କିଏ ତୋର ପରିବାର
ଜ୍ଞାତି ବନ୍ଧୁ ସଖା ସହୋଦର । ବାଟମୋଡ଼ ଭୁଲିଯିବେ
ଯେଉଁ ବାଟେ ନାକ ଟେକି, କଣ୍ଟା ବାଛୁ ଉଦ୍ଭିଦ ବାଙ୍କା
ପଡ଼ିଥିବୁ ନିହାତି ଏକାକୀ,
ଆଖିମଳି ଦେଖୁଥିବୁ ଏ ନିର୍ମୋକ ଏ ଦୁନିଆର ରୂପ
ସକାଳ ସଞ୍ଜରେ ଯେଉଁ ଆକାଶର ବାଦଲର ରଙ୍ଗ
ବିକ୍ଷିପ୍ତ ସ୍ୱାର୍ଥ ଏବଂ ଅର୍ଥ
ସୂର୍ଯ୍ୟ ଯେବେ ବୁଡ଼ିଯିବ ସବୁରଙ୍ଗ ପଡ଼ିଯିବ ଫିକା
ତ୍ରିଭୁବନ ଏକାକାର ଆଦିମ ଜନୈକା
ସର୍ବଭକ୍ଷ ଅନ୍ଧକାର, ସବୁରଙ୍ଗ ବହିଷ୍କାର
ତମିସ୍ରେ ଭାସୁଥିବା ନାବିକର ବିକଳ ଚିତ୍କାର ।

ଏଇ ଚୋର ମଙ୍ଗଳବାର ସାତ ଆଠ ଦିନ । ଗୁଆ ପାଇ
ଆସିମିଳିବେ ପଲପଲ ଜ୍ଞାତି ପରିଜନ । ଲାଗିଯିବ
ଘମାଘୋଟ ରନ୍ଧାବଢ଼ା ଲୁଡୁଖେଳ । କାଗଜରେ ଲେଖାଯିବ
କିଏ ଦେଲା କିଏ ନେବ କପରି ବେଭାର, ରେଡିଓରେ
ବାଜୁଥିବ ରଜଦୋଳି ଗୀତସ୍ୱର ।
ଘରଦ୍ୱାର ବାଡ଼ି ଓ ଅଗଣା ଜନାରଣ୍ୟ
ସବୁଲୋକ ଜଣାଶୁଣା, ଲାଗିଯିବ ଭଡ଼ାଟଣା ଯୁକ୍ତିତର୍କ
ଦେବାପାଇଁ ବ୍ରାହ୍ମଣ ଦକ୍ଷିଣା
ଏ ସବୁକୁ ଦେଖି ଦେଖି ନଘାଟଦହେ ମିଶିଯିବ ପାର୍ବତ୍ୟ ଝରଣା ।



# ତୀର୍ଥଯାତ୍ରୀ

ଦୁରଚନ୍ତା ଦଗ୍‌ବଳୟ ଚନ୍ତା ଏବଂ ଦୁରର ଶାନ୍ତନୀଡ଼ରୁ
ତା' ଦେହର ଅନେକ କୋଡ଼ର ଏବଂ ପିତାମହ ଜରଦ୍‌ଗବ
ବୟସ ତା' ଯୋଡ଼ାଭୁଣ୍ଡୀ ଆଡ଼େ ଗୁଲ ସାଡ଼େ ଗୁଲ
ଆଗରେ ଗୋବର ଖାତ ଅଗ୍ନାଗ୍ନି ବନସ୍ତ ଏବଂ ଜଳ
ଜଳରେ ପଡ଼ିଲେ ଗୋଡ଼, ଗୋଡ଼ ଯାଏ ତଳକୁ ତଳକୁ
ତା ସନ୍ନିତ ଦେହର ସମସ୍ତ ଅଂଶ ରକ୍ତ ମାଂସ ଅସ୍ଥିମଜ୍ଜା
ଓ ଅସ୍ତିତ୍ୱ । ଜଗିରଖି ଗୁଲ ଗୁଲ ମହଣିଆ ବୃଷଭ ସେ
ବିକଳାଙ୍ଗ ଦେହ ଆଉ ମନ। କାମନା ବାସନା ତାର ଲୁପ୍ତପ୍ରାୟ
ଯୌବନର ଜନ୍ମୁଘରେ କପର ଲାଗିଲା କିଆଁ ସିଏ ଜାଣେନାହିଁ
ସଂପୂର୍ଣ୍ଣ ବିଲୁପ୍ତି ତାର ଯନ୍ତ୍ରଣାର ଶେଷ ସାହାନାଇ ।

ବୈମାତୃକ ମନଦେଇ ନଦନଦୀ ପହଁରି ପହଁରି
ଲାଗିଛି କୂଳରେ ଆଜ କୂଳସାରା ଶାମୁକାଙ୍କ ଭିଡ଼
ସେ ଭାବୁଛି ସେ ପାଇବ ସ୍ନେହ ପ୍ରେମ ସସ୍ନେହ ସଂଭାଷ
ନିଃସଙ୍ଗ ତା ଜୀବନରେ ଅନ୍ତନମି କେତେଟା ପାହାଚ
ଦେଖିବ ଦେଉଳ ବାଁ - ଜବାକୁସୁମ ସଂକାଶ କାଶ୍ୟପେୟ ମହଦ୍ୟୁତିଃ ।

ବୟସର ରୂପାନ୍ତର ଜରଦ୍‌ଗବ, ମାନବ ଓ ତୀର୍ଥଯାତ୍ରୀ
ସମୟର ଗତି ଦେଖେ ନିରୁଦ୍‌ବେଗ ଜ୍ୟୋତିରିଙ୍ଗଣରେ
କମ୍ପା ଆକାଶର ଅସଂଲଗ୍ନତାରେ
ମାଧୁରୀକା ନଗ୍ନ କମ୍ପା ସାଗରିକା ସମାଧିସ୍ଥ ଅସୀମ ଆଶାରେ
ରଙ୍ଗ ରଙ୍ଗ ପକ୍ଷ ଝାଡ଼େ ଘଗକରି ସମୟକୁ
ସମୟକୁ କରିବାକୁ ସହଣୀୟ, କଷ୍ଟ ମଧୁର ।
ଫଡ଼ ଫଡ଼ ଶବ୍ଦ କରି ମନେ ମନେ ସୃଷ୍ଟି କରେ
ଝଡ଼ କମ୍ପା ଉଲ୍‌କା ଘଡ଼ଘଡ଼,

ବୀରମାନେ ଯୁଦ୍ଧକର ହାରଜିତ ପଟ୍ଟକଥା
ଗତଦିନ ଆଜି କାଲି ସକାଳ ଓ ସଂଜ

ସେ ସବୁର ଏକଟି ଝଲକା ଏବଂ ଏକଟି ଉଚ୍ଛ୍ୱାସ
ତୁମେ ଖାଲି ଆଗେ ଗୁଲି ପଛକୁ ଫେରିଲେ ବାବୁ
ନାହିଁ ପରିତାଣ ଜୀବନର ତାଗସୂଣେ
ଆଗରେ ବୈରାଗ୍ୟ ଏବଂ ପଛରେ ସଂମୋହ
ଆଗରେ ସମୁଦ୍ର, ତା'ଉପର ଶ୍ୟାମକାନ୍ତ ଜଳ
ଅସୁମାର ମଣିମୁକ୍ତା ମଗର ଶାଙ୍କୁତ
ତିମି ହଂସ ଶିଶୁମାର, ପଛରେ ନଗାଠ
ଏକ ଅନୁର୍ବର ଶୁଷ୍କ ମରୁଭୂମି
ଓ୍ୟସିସ୍‌ର ସତ୍ତା ନାହିଁ କେବଳ ଶୂନ୍ୟତା ।

ଘୋଡ଼ାଗୁଡ଼ି ଠିକ୍ ଅଛି
ଠିକ୍ ଅଛି ରଥର ଅକ୍ଷ ଏବଂ ଛତ୍ର
ସାରଥୀ ସତର୍କ ଏବଂ ପାରଙ୍ଗମ ନିତାନ୍ତ ନିର୍ଭୟ
ତୁମେ ଗୁଲି ଦମ୍ଭଧର ଯଦିବା ସମ୍ମୁଖେ ଦେଖ
ଭଗ୍ନଜାନୁ ଦୁର୍ଯ୍ୟୋଧନ ରକ୍ତନଦୀ ସନ୍ତରଣରତ
ସ୍ୱୀୟ ଶବ ଭେଳା କରି ହାତକୁ ଆହୁଲା କରି
ପୁତ୍ରଶବ ଭ୍ରାତାଶବ ପିତାଶବ ପିତାମହ ଶବ
ପତିଶବ ଜାୟାଶବ ଶ୍ୱେନ ଜମ୍ବୁ ଶୃଗାଳଙ୍କ ଶବ
ଯେତେ ଶବ ଭାସୁଛନ୍ତି ଇତସ୍ତତଃ ପାନଧୂଆ କାଠ ପରି
ତୁମେ ଏବଂ ଆମ୍ଭେମାନେ
ନେଉଥାରୁଁ ସେମାନଙ୍କ ସାମାନ୍ୟ ସାହାଯ୍ୟ ।
ଓଁକାର ଓ ବ୍ରହ୍ମଦ୍ୱେଷୀ ଯଜ୍ଞଶାଳ ଉଚ୍ଛିଷ୍ଟ ସମିଧ
ଅଶ୍ୱମେଧ ଗଜମେଧ ନରମେଧ
ଦିଗ୍‌ବିଜୟ ଆନୁଗତ୍ୟ ଐଶ୍ୱର୍ଯ୍ୟ ସମ୍ଭାର
ଅର୍ଦ୍ଧସୁପ୍ତ ନେତ୍ରଜଳର ଆକୁଳ ଆହ୍ୱାନ-
ଏ ସବୁର ସମନ୍ୱୟ
ସଦ୍ୟଜାତ ଶିଶୁପରି ଅଭିଜ୍ଞତାହୀନ ।

— ଃ —

# ଲାଜ

ଆମ ରାଜ୍ୟେ ଫୁଲମାନେ ଝଡ଼ିଯାନ୍ତି
ଅଳ୍ପକାଳ ରହି
ସେଥିପାଇଁ
ଆମ ମନେ ଗଭୀର ଯନ୍ତ୍ରଣା
ଆଉମଧ୍ୟ ସମାଜର କଟକଣା
ସକାଳ ସଂଜରେ
କମ୍ବା ଯେ କୌଣସି ସମୟରେ
ସେ କାମନା, ଭାବନାର ସଂକୀର୍ଣ୍ଣତା
ମାନସିକ ଅବ୍ୟବସ୍ଥା ଲଜ ଓ ଭୟର
ଆମେ ଜାଣୁ, ଫୁଲଙ୍କ ସଯନ ଏକ ବାହ୍ୟ ଆଡ଼ମ୍ବର ।

ଲଜଟା ନିର୍ଲ୍ଲଜ କନ୍ତୁ କାଳପାଣ ଦେଖି
ପାଶବିକ ବ୍ୟଭିଚାରର ଅବ୍ୟକ୍ତ କାମନା
ଉଲଗ୍ନ ଉଦ୍ଭଟ ମୀତ ଯାହାକୁ ଭାବିବା ମନା
ଏଇ ଆମ ବୁଦ୍ଧାବେଶ୍ୟା ସମାଜରେ
ବାହାରର ପରିପାଟୀ ଆମର ସର୍ବସ୍ୱ
ଯାହାପାଇ କହୁଥିବା ବଳଥିବା ଆଦର୍ଶ ଉପରେ
ଠକଥିବା ସେତେପାଇ ନିଜକୁ
ଓ ସମସ୍ତଙ୍କୁ, ଚଢେଇ ଓ ମାଙ୍କଡ଼ଙ୍କୁ, ଦାଅଁ ଦେବତାଙ୍କୁ
ଠକାମି ଆମର ଗୁଣ ଆମ ଗର୍ବ ଗୃହ୍ନଦା ଗୌରବ
ସୌଷ୍ଟବ ଓ ପରମ୍ପରା ଜାତୀୟ ସ୍ୱଭାବ ।

ଠକାମି ଓ ପ୍ରବଞ୍ଚନା ନୁହେଁ ସତ ଆତ୍ମାର ବିକାର
ଏ ବିକାର ଏ ଆମର ଧାଇଁଥିବା ଶତାବ୍ଦୀର
ବିକଳାଙ୍ଗ ପରିବେଷ୍ଟନୀର ।
ଫୁଲଙ୍କର ସ୍ୱପ୍ନ କେତେ ସୁନ୍ଦର ଓ ନିଷ୍କପଟ
ସ୍ୱତଃସ୍ଫୂର୍ତ୍ତ ମନର ଆବେଗ
ଦୈନନ୍ଦିନ ଜୀବନରେ ରମଣୀୟ ସତ୍ତ୍ୱର ସଂଯୋଗ ।

ସେ ସ୍ୱର୍ଗୀୟ ଆନନ୍ଦକୁ କ୍ଲିଷ୍ଟ ବିଷମୟ
କରିଦିଏ ବିଗ୍ଳଲାଂଜ ସାମାଜିକ ଲଜ ଆଉ ଭୟ ।

# ବସ୍ତାନୀ

ମୁଁ କାହାଇ ଲଢ଼େ ଏବେ ସାପଜଉ ନଥାଁ ବୃଗକଡ଼ ?
ତେବେ କଣ ମୁଁ ଗୋଟେ ସଂସ୍କୃତିର ବିଦୂଷକ
ଇସ୍ତାହାର ପିତୃପୁରୁଷର ? ହାଟପରେ ଠିଆ ହୋଇ
ମୁଁ ବି କହେ ଶୁଣ ମୋର ଅସ୍ଥାକର ଭାଇ ଓ ଭଉଣୀ
ସଂସ୍କୃତି ସବୋଟ ନୁହେଁ, ସଂସ୍କୃତି ଯେ ଶଚା କାଟେ ସମସ୍ତ ସୁଯୋଗପାଇ
ସଂସ୍କୃତିଟା ଅତ୍ୟନ୍ତ ନିର୍ଦ୍ଦୟ
ଛାଡ଼ିଦେଇ ଚାଲିଯାଏ କରି ନିଃସହାୟ ।

ଗୋଠୁଁ ଫେରି ଯୋଷା ଅପରାହ୍ନ
ପଦ୍ମାରେ ପୂରାଏ ମନ୍ତ୍ର, କରୁଥାଏ ରୋମନ୍ଥନ, ଚର୍ବିତ ଚର୍ବଣ
ଛାହା ତାର ବଞ୍ଚିବା ସ୍ୱାକ୍ଷର, ବଞ୍ଚିବାକୁ
ଭୁଲିଛା ଗାଈ, ପଙ୍ଗୁ ଯାହା
ଅପସୃୟମାଣ ବର୍ତ୍ତମାନ । ସଂସ୍କୃତ ଖଟୁଲିର
ହଅଁ । ଆଢ଼େ ନଅ ସାଢ଼େ ନଅ
ଭାଙ୍ଗିଗଲେ ଯୋଡ଼ ହଅ, ଦୁଃଖନାହିଁ ଗ୍ଳାନିନାହିଁ ।
ଖାଲି ଟିକେ ଗେଲା କରୁଥାଅ ।

ସଂସ୍କୃତିର ଗତି । ଏଇ ଗୋଟେ ଘର
ସିମେଣ୍ଟ ଓ ଚୂନ ସବୁ ଫସ୍‌ଫାସ୍ ଝଡ଼ିଗଲା
ଥାକ ଥାକ ମାଙ୍କଡ଼ା ପଥର
ଛାତ ଫାଙ୍କା କାନ୍ଥ ଫାଙ୍କା ଦୁଆର ଝରକା ଫାଙ୍କା
ନ ଶୁଣିଲେ ଭଲ ଘରର ଭିତର ଖବର
ଛାତକୁ ସଜାଡ଼ିବାକୁ ସଂସ୍କୃତିଟା ଦିଏ ନାହିଁ କଣ୍ଠି ଠଙ୍କା
ସାମୟିକ ରକ୍ଷାସୂତ୍ରେ, ବରଂ ସାମର୍ଥ୍ୟକୁ ପଙ୍ଗୁ କରେ
ନେଇଯାଇ ଧନଜନ ଗୋପଲକ୍ଷ୍ମୀ ଝାଉଁବଣ ପାଷାନ୍ତ ଭୂଷଣ
ମନଟାକୁ ଭରିଦିଏ ଧୂଆଁଳିଆ ସନ୍ତ୍ରାନ୍ତ ସ୍ୱପ୍ନରେ ।

ସଂସ୍କୃତିଟା ମୋ ଗାଆଁର ବରଗଛ
ତା ଗଣ୍ଡିରେ ମାଟିଘୋଡ଼ା ବହଳ ସିନ୍ଦୂର
ଦୁବ କମ୍ବା ଦେବଦାରୁ ନ ଉଧାଏ ତା ଛାଇରେ
ତାଙ୍କି ରଖେ ଢ'ମାଣେ ଗୋଚର, ଶତାବ୍ଦୀ ଶତାବ୍ଦୀ
ଧର ଅସ୍ୱୀକାର କରୁଥାଏ ଯଦ୍ଧ ଦେଖେ
ସମଗୋଷ୍ଠୀ ସ୍ୱାଧୀନ ବଗ୍ଧର, ଛାତିରେ ଜାବୁଡ଼ିଧର
ଅସଂଖ୍ୟ ପରାଙ୍ଗପୁଷ୍ଟ, ଗେଣ୍ଡା ଓ ବଡ଼ମ୍ବିତ
ସୁଶୀତଳ ଛାଇଦେଇ,
ଜ୍ୱଲନକୁ ଶୋଷିନିଏ ମଧ୍ୟାହ୍ନ ସୂର୍ଯ୍ୟର ।



# ପର୍ଯ୍ୟାଲୋଚନା

ପ୍ରଗଳ୍‌ଭତା ମାର୍କ୍ସମୟ ତୁମେ ଯଦି ସତ କୁହ
ଅନ୍ତରର ପରାକାଷ୍ଠା ଆତ୍ମ ନିବେଦନ
ଶହୀଦର ଆତ୍ମବଳୀ ଅନ୍ତରର କୋହ
ତୁମେ ଯଦି ବୁଝିପାର ଏ ସବୁକୁ ବାରମ୍ବାର ଛଟାକାଟି
ଦେଶ ଜାତି ସମାଜକୁ ଆଖିପାଖି ସାଇପଡ଼ିଶାକୁ ।
ସାବଲୀଳ ଆତ୍ମ ପ୍ରବଞ୍ଚନା, ସେତ ତୁମ ପ୍ରତିଷ୍ଠାର ବେଣୀ ।

କାହିବାଟା ବେଳେବେଳେ ନିହାତି ସହଜ
କା'ର କେତେ ଦୃଷ୍ଟାନ୍ତ ଦେଇ, ମୁହ୍ୟମାଣ ହୋଇ
ଖାଲି ଏକ ସାମୟିକ ମନର ବିସ୍ମୃତି
ବାଜଆଟା କେତେ ଭଲ ପିଲା
ପରପାଇଁ ନିଜ ପ୍ରାଣ ଦେଲା ।
ଦୃଷ୍ଟାନ୍ତକୁ ବିକଶିଙ୍କି ବଞ୍ଚିଯିବା ନେତାଙ୍କ ଦେଖାଇ
ଏଇ କାନଟେକି ଶୁଣୁଥିବା କେତେ ଗଣ୍ଡା ଭେଲକାଙ୍କୁ
ବିକଳାଙ୍ଗ ଗୋବର ମୂର୍ତ୍ତିଙ୍କୁ ।
ଐତିହ୍ୟର ଦୃଷ୍ଟାନ୍ତ ଏକ ଆତ୍ମହତ୍ୟା-ବିକଳ ସଂଗ୍ରାମ
ଜାଣିଶୁଣି ଶୋଇବାକୁ ନିର୍ଲଜ ଉଦ୍ୟମ ।

ଭାବପ୍ରବଣତା ଏକ ଦରସିଝା ରୁଗ୍ଣ ପରିସର
ମେଲୋଡ୍ରାମା ଗୀତିନାଟ୍ୟ ସଙ୍ଗୀତ ଆସର
ଏହା ତାହା କରିଯିବା ଆକୁ ତାକୁ ଦାୟୀକର
ଯେଣୁ ଆମ ନିହାତି ଦର୍କାର
ପ୍ରଜାପତି ଡେଣା ଗୁଂଞ୍ଜି ପକାଇବା ଛତଲା ବାଳିରେ ।
ବାଲିଟାରେ ଛଟପଟ ହେଉଥିବା ଜନ୍ତୁଟିର ପରିଧାନ ଦେହ
ସମ୍ଭ୍ରମଞ୍ଚ ଭାଷଣର ସାରାଂଶ ଓ ଭାବ ବିନିମୟ ।

ନହେଲେ ଅତିଭଲା ପାର ଯଦି କୁହ କିଛି ସତ
ଯେ କଥାରେ ଅର୍ଥଥାଏ, ଆବେଗ ଓ ଶୁଭ ଭବିଷ୍ୟତ ।



# ଅନ୍ତର୍ଦାହ

ଆମ ସନ୍ଧ୍ୟ ରଙ୍ଗର କୁହୁକ
ଆମ ଗାଆଁ ଆଙ୍କ ବାଙ୍କ
ସଡ଼କରେ ଧାଉଁଥିବା ଲୋକବାକ
କାନ୍ଧେ ବୋଝ ନେଇଥା ନେଇଥା ଅନୁଭୂତି
ସମ୍ପୃକ୍ତ ଶ୍ମଶାନ ବୈରାଗ୍ୟ
ଏବଂ କୋଥଳୀରେ ଜାକଜୁକ ରଖିଥିବା
ଅଳନ୍ଧି ବିବେକ ।

ଏ ଦେଉଳକ ପୁରାତନ
ବୁଢ଼ା କେତେ ବୁଦ୍ଧିମାନ ମାଙ୍କଡ଼ଙ୍କ ଅଗ୍ନି ସଂରକ୍ଷଣ
ସେମାନଙ୍କ ଆବିଷ୍କାର, ଉଦ୍ଭାବନ, ଅତୀତ ଓ ବର୍ତ୍ତମାନ
ମଦମୋହ ମାତ୍ସର୍ଯ୍ୟର
ବିଦଗ୍ଧ ବିକାର,
ଓଁ କାରର ଉଦ୍‌ବର୍ତ୍ତନ, ପାଥେୟ ଓ ପରିତ୍ରାଣ
ଋଷିଙ୍କର ଘାସଶେଯ ବରଅଠା ମୃଗଶିଶୁ
ମସୃଣ ସୁନ୍ଦର, ନଶ୍ୱର ଓ ପ୍ରାକୃତିକ
ରୋମନ୍ଥନ ବଂଶବୃଦ୍ଧି ହସ୍ତାନ୍ତର ଜ୍ଞାନ ।

ଐତିହ୍ୟର ପରିବୃଦ୍ଧି ହେଲା
କାଳକ୍ରମେ ଚୁଳରେ ଅଳନ୍ଧୁ ବୁଦ୍ଧି
ବୁଢ଼ା ହେଲା କାଲିକାର ପିଲା
ସେ କଥା ଏପରି ହେଲା
ସେତ ଏକ ଜଟିଳ ସମସ୍ୟା
ତିଥିବାର ଲଗ୍ନଙ୍କର ପରିଭାଷା, ସାମୁଦ୍ରିକ
ପୂର୍ଣ୍ଣିମା ସଂକ୍ରାନ୍ତି ଏବଂ ଅମାବାସ୍ୟା ପ୍ରତିପଦ
ଏ ସବୁଙ୍କ ବାଦ ପ୍ରତିବାଦ
ସାମ୍ରାଜ୍ୟର ପ୍ରଥମ ପ୍ରମାଦ ।

ରଙ୍ଗୀନ୍ ଖୋଳପା
ଫମ୍ପା କମ୍ପା ପରିପୂର୍ଣ୍ଣ ମାଂସଳ ସଙ୍ଗୀତ
ଭ୍ରୂଣର ଅଙ୍କୁରୋଦ୍‌ଗମ

ଅନୁକୂଳ ବସ୍ତୁଙ୍କ ଉଦ୍ୟମ
ଠେସି ଠେସି ଘାତ ପ୍ରତିଘାତ କଣ୍ଠାବେଷ୍ଟ
ଖୋରପାର ଉପଦ୍ରବ
ଶାଳଗ୍ରାମ ପୋକଙ୍କ ଉତ୍ପାତ ।

ସେ ଖୋଳପା ଆରକଡ଼ ଭଲ କି ଅସନା
ବନ୍ଦୁର କି ପିଚୁଗୁଡ଼ା
କପଟ ଅବସ୍ଥା
ସେ ସବୁ ଦେଖିବା ମନା, ଆମକୁ ତୁମକୁ
ଏବଂ ସମସ୍ତଙ୍କୁ,
ନିର୍ମଳ ପାଣିକୁଣ୍ଡରେ ତାରାଙ୍କର ପ୍ରତିଫଳନକୁ
ଯଦ୍ଧପି ଏ ଆରପାଖ ଗହଳ ଅନ୍ଧାର
ଜାଣିବା ନହାନ୍ତି କଷ୍ଟ
କେଉଁ ଦ୍ରବ୍ୟ କେଉଁ କସମର ।

ଶବ୍ଦର ବିନ୍ୟାସ
ଏବଂ ପ୍ରବୃତ୍ତିଙ୍କ ଆଦିମ ଜିଜ୍ଞାସା
ପକ୍ଷୀଙ୍କ କାକଳୀ କୁଳ ଝରଣାର କଳସ୍ୱର
ପ୍ରଜ୍ଞାର ବିକାଶ
ପ୍ରତିମାର ଜୀବନ୍ୟାସ
ଉଦ୍‌ବର୍ତ୍ତନ ଧ୍ୱନି ସନ୍ଦର୍ଭର ।

ଆମଗ୍ରନ୍ଥୀର ଧ୍ୱନିର ବିକୃତି
ଏବଂ ରଙ୍ଗଙ୍କର ଅବୈଧ ମିଶ୍ରତା
ବିଷାକ୍ତ ଏ ଖାଳପଡ଼ ଭୂଣ
ଏବଂ ଏମାନଙ୍କ ବାହ୍ୟ ଆବରଣ ।
ବିକଳାଙ୍ଗ ଘସଡ଼ା ସଂସ୍କୃତି
ପ୍ରତିକ୍ରିୟା ଅନ୍ତର୍ବାଦ, ଆମର କଥାରେ
ଭୂଣର ପୁଷ୍ପିତ ହେବା
ଖୋଳପାର ଭଙ୍ଗାରୁଜା ପରେ ।



[ ଖୋଳପା-୩ ]

# ଶାମୁକା

ବହୁତ ଆଶ୍ଚର୍ଯ୍ୟ ଲାଗେ ଏ ନଈର କଡ଼େ କଡ଼େ
କଡ଼ ଫଟା ଶାମୁକାଙ୍କୁ ଦେଖି
ଦିନ ଥିଲା ଏଇମାନେ ବାଲି ଚର ବୁଲୁଥିଲେ
ସମୟର ଚଟାଣରେ ନିଜ ନାମ ଲେଖି ।
ଲୋକ ଦେଖି ଲାଜକରି ଖୋଳପାରେ ହେଉଥିଲେ ବନ୍ଦ
ଭାବୁଥିଲେ ଖୋଳପା ବହୁତ ଟାଣ ବଡ଼ ନିରାପଦ ।

ଖୋଳପାକୁ ଫାଳକରି ଲାଜକୁଳି ମୁହଁ ଖର ହେଲା
ଖୋଳପାକୁ ପରକରି ଆକାଶେ ଉଡ଼ିଲା କମ୍ପା ପାଣିରେ ବୁଡ଼ିଲା ।
ଖୋଳପା ପଡ଼ିଛି ଏଠି ଇତସ୍ତତଃ ନଷ୍ଟଭ୍ରଷ୍ଟ ହୋଇ
ଖୋଳପାର ନିଜ ଇଚ୍ଛା ନାହିଁ ।

ଏହା ମଧ୍ୟ ହୋଇପାରେ,
ଖୋଳପା ବଇରି ହୋଇ ମନେ ମନେ ଇତସ୍ତତଃ ହେଲା
ନିରାମାକ୍ଷୀ ଲାଜକୁଳୀ ମୁହଁଟିକୁ ବହିଷ୍କାର କଲା ।



# ଆମ ଗାଆଁ

ଚ୍ଲ ଟିକେ ଗାଆଁ ଆଡ଼େ ବୁଲିଯିବା
ସବୁ ବ୍ୟସ୍ତ ଲଗେ ଏଠି
ଦେଖି ଦେଖି ନସ୍ଥୁକ ସଭ୍ୟତା, ଗୁରୁଗିର
ଜଲଙ୍ଗଚା, ଗଣ୍ଡାଗଣ୍ଡା ଚଣ୍ଡୀ ଓ ଚ୍ଛମଣ୍ଡା
ଏବଂ ସେମାନଙ୍କ ଶେଚା ଆଖି
ଚଣ୍ଟା ଆଖି ପଚା, ଧଣ୍ଡାବକା ଧପ୍‌ପାବାଜ
କଚ୍ଛଫିଚା ସ୍ତାବବଙ୍କ ହାଲଚ୍ଲ୍
ମନେପଡ଼େ ଗାଆଁ କଥା
ମଫସଲ ହଳଦିଆ ସାରୁଫୁଲ ।

ଧଇଁସଇଁ ହୋଇ ଘଦି ଦମ୍ ମାରି ବସିଯାଏ
ସୁନାନାକି ଗାଆଁ ମୋର ଛପି ଛପି ଚ୍ଲଆସେ
ଅଳନ୍ଦକୁ ମୋ ପୁଛି ଦିଲେଇ ପରି ଛୁଇ
ଓ ବଣ୍ଟଣା ଧରି ବାସ୍ନାଗୀତ ଗାଇ ।

ଆମ ଗାଆଁ ଟିକି ଗାଆଁ ବର୍ଷାଦିନେ କଆଫୁଲ ଫୁଟେ
ଖରାଦିନେ ମଲ୍ଲୀ ଫୁଟେ ଆମ୍ବଗଛେ ବଉଳ ଓ କଷିଧରେ
ମାଟିବଂଶ ଅବଧାନ ଗଛତଳେ ଚ୍ଛହାଲୀ କରାଏ
ସକାଳର ସୁନା ଖରା ଶୀତଦିନ ସୋରିଷ କଆରୀ
ନଇପଠା କାଶତଣ୍ଡୀ ଶରତର ଟୋପା ଟୋପା ଉଡ଼ନ୍ତା ବାଦଲ
ଜନ୍ମାଳର ଝୁଲଣା ଗଛ ଗାଆଁ ହାଟ ଶାଗୁଆଡ ଚକା ବର
ରଜ ଦୋଳ ପୋଡ଼ପିଠା ଅଷ୍ଟମୀର ହଳଦୀ ପତର ।

ସେଇ ଗାଆଁ ମୋର ଗାଆଁ ମୋତେ ଚହ୍ନେ ମୋର ସେ ମନକଥା ବୁଝେ
ବେଡ ବୁଢା କୋଳ ଦିଏ ଦୁଧ ଛେନା ଦେଇଯାଏ ଗଉଡ଼୍ଣୀ ସପର ଫୁଲେଇ
ଗାଈଆଳ ବଂଶୀ ବାଏ ଗୀତ ଗାଏ ପାଠ ଆମ ହମ୍ବାରଡ଼ ଦିଏ
ସବୁ ନଈ କୁଳୁ କୁଳୁ କଥା କହେ ପାହାଡ଼ ପର୍ବତ କଥା ସେ ସାଇ ଖବର

ତା' ବାଲରେ ସଞ୍ଜବେଳେ ଡୁଡୁ ଏବଂ ବୋହୂଚୋରି ଖେଳ
ସେ ଗାଆଁରେ ବନ ହୁଏ ଗଛ ହୁଏ ସଞ୍ଜ ହୁଏ ବଡ଼ଭୋର ହୁଏ
ସେସବୁର ସ୍ୱରଥାଏ ରଙ୍ଗ ଥାଏ ସ୍ୱାଦ ଥାଏ-ଜାମୁକୋଳି କାଉ ଓ କୋଇଲି

ଗାଆଁରେ କଣ୍ଢେଇକୋଳ, ମାଆ କୋଳେ ପିଲାଙ୍କ
ଅଧଉଲୀ, ଲଣ୍ଠନ ଆବୃତ ଶିଖା ସ୍ତିମିତପ୍ରଜ୍ଜ, ସ୍ଥିର
ଚମ୍ପାଫୁଲ ହାର ଧରି ରୁଙ୍ଗୁଡ଼ିରେ ନବ ରଣା ଚୂଲିଯାଏ
ନିକଟ ବଜାର, ଗୁହବଧୂ ବୋଲେଇ ବୁଲେ ଘରଘର
ଶୁଣି ଶୁଣି ସମସ୍ତଙ୍କ ହାନିଲାଭ, ରଖି ରଖି ମାଛଙ୍କ ଖବର ।

ଧୂଳିର ରାଜ୍ୟରେ ପଶି ନିଃଶ୍ୱାସ ମୋ ବନ୍ଦ ହୋଇ ଆସେ
ମନ ହୁଏ ଧାଇଁଯିବି ମୋ ଗାଆଁକୁ,
ସେ ଅନ୍ଧାର ଭାରି ଭଲ, ସେ ଅନ୍ଧାର ଗୀତ ଗାଏ
ବହୁ ସ୍ଥାନ ବଞ୍ଚିବାକୁ ଦିଏ
ସେ ଫୁଲ ମଉଳିଯାଏ, ସେ ଫୁଲର ବାସ୍ନା ରହିଯାଏ ।

ଏ ସହରର ଭୁଣ୍ଡୀଧରି ଓଟାରୁଛି ମୋ ଫୁଲରୁ ରଙ୍ଗ ବାସ୍ନା
ମହୁ ଓ ପରାଗ, ଓଗାଳୁଛି ବଗିଚାକୁ ବାଟ; ଫୁସୁଲିଫୁସୁଲି
କରି—ମିଶି ଯା'ରେ, ମିଶି ଯା'ରେ ମହା ସ୍ରୋତେ
ଭୁଲିଯା'ରେ ଭୁଲିଯା' ତୁ ଅସ୍ତିତ୍ୱ ତୋ, ଫିକା ପଡ଼ିଯା'ରେ ।
ଏଇ ଦେଖ ସବୁ ଭଙ୍ଗା ଓ ପୁରୁଣା ଘର, ଡାଟି ଓ ଛପର,
ସେ ସୁଅରେ ଭାସିଗଲା, ନୂଆ ଘର ହେଲା,
ପାରା ବସା ଭଙ୍ଗାଗଲା, ରାସ୍ତାରେ ପିଚୁ ପଡ଼ିଲା
ଧୂଳି ମଲା ଘାସ ମଲା,
ପଥରରେ ପତାକା ଉଡ଼ିଲା ।



# ହାଡ଼ିବନ୍ଧୁ ସାହୁ

ଯଦି ତୁମେ ଖାଇ କେବେ ମାଡ଼
କହିପାର କଥା ବଡ଼ ବଡ଼
"ଦସ୍ୟାକର ଗୁଡ଼ଦେଲି ସିଏ ସବୁ ଚୂଚୁନ୍ଦରୀ କନ୍ଧ
ହାତ ଦେଇ ମାରିଥିଲେ ହାତ ମୋର ହୋଇଥାନ୍ତା ଗନ୍ଧ
ଏକ ଏକ ଚୂପୁଡ଼ାରେ ମୁଣ୍ଡ ଗଣ୍ଡି କରିଥାନ୍ତି ପର
ଧୂଳି ଗିଳି ରଡ଼ିଥାନ୍ତେ ପ୍ରାଣ ରକ୍ଷାକର ।"
ତୁମ କଥା ଯେତେ ବଡ଼ ହେଉ
ନିଃସନ୍ଦେହେ ମାନନବ ହାଡ଼ିବନ୍ଧୁ ସାହୁ ।

ପଁଷଠି ବର୍ଷର ବୁଢ଼ା ବାଡ଼ି ଧରି ଠୁକୁ ଠୁକୁ ଚାଲେ
ଅନ୍ଧାରକଣା ଧରିଲା ଦୁଇବର୍ଷ ତଳେ
ଡାକ୍ତର କହିଲ୍, ଅଜା, ବୁଢ଼ା ହେଲ୍ ରୋଗ ଆଉ ହୋଇବନି ଭଲ
ଯେତେ ବାଟ ବାଙ୍କି ଅଛି ବାଡ଼ିଧରି ଠୁକୁ ଠୁକୁ ଚାଲ ।

ଯଦିଚ ଧୋଡ଼ଶ ସେଇ ପାଖ ଗାଆଁ ରଙ୍କିଆ ମୁଦୁଲି
ନିହାତି ଗମ୍ଭୀର ହୋଇ ମାରିଦିଏ ଚାଲି—
ସେ ଦିନ ଟୋକା ସାତଟା ଠିଆ ହୋଇ ହାଟ ପଡ଼ିଆରେ
ଭାରି ଜୋରରେ ରଡ଼ୁଥିଲେ କିଏ ଯଦି ଇଚ୍ଛାକରେ କ'ଣ କରିପାରେ
ପଶିଗଲା ତାଙ୍କ ମଧ୍ୟେ ମେଣ୍ଢା ମଧ୍ୟେ ବାଘ
ଡାକ ଦେଲା ରେ ଶୃଗାଳେ ଚାଲିଆସ ଆଗ
କେହି ଯହୁଁ ନ ଆସିଲେ ସମସ୍ତଙ୍କୁ ଦେଲା ନାଚେ ନାଚେ
କିଛି ବାଟ ଧାଇଁଯାଇ ଗୋଟେ ଗୋଟେ ପଡ଼ିଲେ ଚିତ୍‌କାତେ
ସମସ୍ତେ ଧରିଲେ ମୋତେ, ରଖ ତାଙ୍କ ଜୀବନକୁ ରଖ
ତୁମେ ପରା ଦସ୍ୟୁଙ୍କୁ ପ୍ରତ୍ୟକ୍ଷ ।
ତାଙ୍କ କଥା ଯେତେ ବଡ଼ ହେଉ
ନିଃସନ୍ଦେହରେ ମାନନବ ହାଡ଼ିବନ୍ଧୁ ସାହୁ ।

ସେ ଦିନ ରାତିରେ ଅଗଣାରେ ଶୋଇ ବୁଢ଼ା ସାଥେ ହେଉଥିଲୁ ଗେଲ
ବାଦଲରେ ବୁଲି ବୁଲି ଆଖି ଆମ କାଟୁଥିଲା ଜ୍ୟୋସ୍ନାର ଫସଲ ।
ମୁଁ କହିଲି ଏଇ ଦେଖ ଜହ୍ନର ଦିହରେ
ଲୋକବାକ ବୁଲୁଛନ୍ତି କେଡ଼େ ନିର୍ଭୟରେ
ଆମେରିକା ସରକାର ରକେଟ୍ ପଠାଇଥିଲା ପାଞ୍ଚଦିନ ତଳେ
ଏଇ ଦେଖ ତା ଉପରେ ବସିକରି ଗପୁଛନ୍ତି ଦଳେ
ସେ ଗୁହିଁଲା ଆଖିମଳି କିନ୍ତୁ କିଛି ପାରିଲାନି ଦେଖି
ଗୁମ୍ ମାରି ବସିଗଲା—ଧର୍ମଛଡ଼ା ସର୍କାରକୁ ପ୍ରଭୁ ଏକା ସାକ୍ଷୀ ।

ସେ ରାତି ହୋଇଲା ବର୍ଷା ସୁଉ ସୁଉ ପବନ ରଡ଼ିଲା
ରାସ୍ତାକଡ଼ ତାଟି ପଲା ଗୋଟାସୁଦ୍ଧ ଓଲଟିପଡ଼ିଲା
ସକାଳେ ଥମିଲା ଝଡ଼-ଟିଗା ଧାଇଁ ଧାଇଁ ଧାଇଁ ଆସି
କହିଲା ହୋ ହାଡ଼ ଭାଇ, କଟକସହରର କାଲି
ମାଟି ତଳେ ଯାଇଅଛି ପଶି,
କାଲି କଇଁ ହୋଇ ଗଲା ହାଡ଼ବନ୍ଧୁ
ତା' ଝିଅର ନଣନ୍ଦଟି କାଲେ
ଛୁଆଟା ଜନମ ପାଇଁ ମେଡିକାଲ୍ ଯାଇଥିଲା ତିନିଦିନ ତଳେ
ଲୁହ ପୋଛି ମୁଁ କହି ବାହୁନିଲା ହୋଇ ବଡ଼ ବେସ୍ତ
ମହୀ ପାରିଲାନି ସହି ଲୋକ ଭାର ପାପଭାର
ହେଉଡ଼ଗୁର ହେଲେଣି ଗେରସ୍ତ ।

କ'ଣ ଦି'ଟା ଗିଳିଦେଇ ଦିନସାରା ଖେଳୁଥାଏ ପଶା
ବାରମ୍ବାର ହାରୁଥିବ ଥରେ କେବେ ହେବନାହିଁ ଦୂସା
ସେ କହିବ, ସେଥିରେ କଅଣ ଅଛି
ଜଣେ ଜିଣି ଜଣେ ତ ହାରିବ
ଖେଳୁଚିତ ଖୁସି ପାଇଁ ମିଛେ କିଆଁ ଦୁଃଖଟା କରିବ ।
ଯଦି ଥରେ ଜିତିଯାଏ ମନଖୁସି ଦିଏ ଥରେ ହସି
କଳା କଳା ହାଣ୍ଡି ଆଖି କୋରଡ଼ରେ ଯାଉଥାନ୍ତି ପଶି
ତା ଆଖିର ଗୁରିକଡ଼ ଯେତେ ଯେତେ ରେଖା
ସିଲଟର ସୂର୍ଯ୍ୟ ପରି ତା ମୁହଁରେ ହୋଇଥାନ୍ତି ଲେଖା ।
ସିଏ ତାକୁ ବୋକା କହ୍ନା ଅଳସୁଆ କହୁ
ସେ କିନ୍ତୁ ଭାବେନି କିଛି, ଆମଗାଆଁ ହାଡ଼ବନ୍ଧୁ ସାଙ୍ଗ ।



# କମଳୀ

ଆମ ସାଇ କମଳୀଟି ଅତ୍ୟନ୍ତ ଅଜବ ବୁଢ଼ୀ
ନବ୍ବାତ ବଛର
ଘଡ଼ି ଘଡ଼ି ବସିଯିବ ଗୁମ୍ ମାରି
ନାତି ନ’ଟା ଡାକି ଡାକି ଥକିଯିବେ ପୁଅ ବୋଉ ଥକିଯିବେ
କ’ଣ ଗୁଡ଼ା ଭାବୁଥାଏ ସିଏ ଜାଣେ
କଏ ଆଉ କହୁଥିବେ ବୁଢ଼ୀ ଖାଲି ଘାଲେଇଛି
ବୁଢ଼ୀ ଅବା ଅନେଇ ଶୋଇଛି ।

କମଳୀଟି ମୂର୍ଖ ନୁହେଁ, ସେ ପଢ଼ିଛି ସ୍ୱର ଓ ବ୍ୟଞ୍ଜନବର୍ଣ୍ଣ
ଅନେକ କବିତା ଗୀତ ଚେଷ୍ଟାକରି ମୁଖସ୍ଥ କରିଛି
ସେ ଲେଖିଛି ଲମ୍ବା ଚିଠି ଆଙ୍ଗୁଠିକୁ କଳା କରି
କାନ୍ଦି କାନ୍ଦି ହୋଇ, ସେ ବୁଣିଛି ନାଲି ଫୁଲ ରୁମାଲରେ
ତକିଆ ଖୋଳରେ, ସେ ବସିଛି ବଉଳ ଓ ମିତ
ସେ ବାନ୍ଧିଛି ଲମ୍ବା ବେଣୀ ଫୁଲ ଓ ଅତର ଦେଇ
ନାଚି ଡେଇଁ ଦୋଳି ଖେଳି ସେ ଗାଇଛି ରଜଦୋଳି ଗୀତ ।
ସେ ପଢ଼ିଛି କେତେଗୋଟି ଜଣାଶୁଣା ଉପନ୍ୟାସ, ଗପ ।
ପଢ଼ୁ ପଢ଼ୁ ସେ କାନ୍ଦିଛି, ଆଖି ତାର ଲାଲ୍ ପଡ଼େ
କଣ୍ଠଟା ଦଦରା ଶୁଭେ, ମନ ତାର ମରିଯାଏ
କନ୍ଥା ଓ ତକିଆ ତଳେ, କଳ ଚକ ପେଶା ତଳେ
ମନ ତାର ପେଶି ହୋଇଯାଏ ।

ଜୀବନ ଗଡ଼ାଯୁ ତାର, ସମସ୍ତେ ଡାକନ୍ତି ବୁଢ଼ୀ
ବାର୍ଦ୍ଧକ୍ୟ ତା ଖାଲି ପଞ୍ଚଚିତ
ଅନାଇ ଅନାଇ ହେଇ ବର୍ଷ ଗୁଡ଼ା ଫର୍ ଫର୍ ଉଡ଼ିଗଲେ
କାଲିକାର ଓଉଲ ଡାଉଲ କମୀ ବୁଢ଼ୀ ହେଲା

ପଙ୍ଗୁ ଓ ଅଥର୍ବ ହେଲ
ଆଡ଼େ ସାଡ଼େ ଲୁହିଁ ଲୁହିଁ ନଃସହାୟ ହୋଇ ।

ସେ କଛୁ ପାରେ ନା ଭାବ, ନେଗେଟିଭ୍ ଫଠ ପର
ଅଶୀତଟା ନହାନ୍ତି ଅସ୍ପଷ୍ଟ ଦଶେ
କଛୁକ୍ଷଣ ଦମ୍ମାର ବସିଯାଏ ଆଖି ଓଦା କରି ।



# ଘର ବାହୁଡ଼ା

ଜଗତା ଫେରିଲା କାଲି ବିଦେଶରୁ ତିନିବର୍ଷ ରହି ।
ଝଡ଼ଷୋକ ବନ୍ୟା ହୋଇ ଉଜୁଡ଼ୁଛନ୍ତି ଘରଦ୍ୱାର ଏକଡ଼ ସେକଡ଼
ଝଡ଼ ବର୍ଷା ସବୁବେଳେ ନଈବଢ଼ି ଗଲାସାଲ ଗୁହାଳଟା ଭାସିଗଲା
ଘରେ ନାହିଁ ତେଲ ଲୁଣ ଡାଲି କି ଚାଉଳ
ବେଙ୍ଗଙ୍କ ବିକଟ ଶବ୍ଦ ଡାହୁକଙ୍କ ଡାକ
ରାତି ଆସି ଦ୍ୱିପ୍ରହର ପଡ଼ିଲାଣି ଦୋକାନ ଫାଟକ ।

ଜଗତା ଆସିନଥିଲା ବିଦେଶରୁ ବାରମ୍ବାର ଚିଠି ଓ ଖବର ପାଇ
ସାରିଆ ଲେଖିଲା ଚିଠି ଜର ବିଛଣାରେ ପଡ଼ି ଦୁଇବର୍ଷ ତଳେ
ଆସିବାକୁ । ତା' ବାପା ଆସିବେ ଏବଂ ତାକୁ ନେବେ ଡାକ୍ତରଖାନାକୁ
ତା' ରମୀ ଲେଖିଲା ଚିଠି କାକୁତି ମିନତି ହୋଇ
ଘରେ ନାହିଁ ଖାଇବାକୁ ପିନ୍ଧିବାକୁ ବେଭାର ଦବାକୁ
କାଳଗାଣ୍ଡି ବଉଳାକୁ ବଡ଼ଜନ୍ତୁ କାମୁଡ଼ିଲା ଆଠଦିନ ତଳେ
ବଡ଼ଝିଅ ସାରିଆଟା ଚାଲିଗଲା ସାମାନ୍ୟ ଜରରେ
ଏବଂ ସେ ଆଣିଛି ଅଶୀଟଙ୍କା ନୋଳକକୁ ବନ୍ଧାଦେଇ ଦିଅଣା ସୁଧରେ ।

କେ କହିଲା ସାରିମା'ଙ୍କୁ ଜଗତା ତ ଫେରିବନି ଆଉ
ଇଏ ଆମ କହୁଥିଲେ ସିଏ କାଳେ ସେଠି ଗୋଟେ ମାଇପୀ ରଖିଛି
ଚିଠିକି ପଢ଼ି ନ ଜମା, ସେ କହୁଛି ଘରେ ତାର କେହି ନାହିଁ
ତୋ ଠାରୁ ମଲାଣି ସିଏ, ତୁ କାଳେ ତାଠାରୁ ମଲୁଣି ।
ଘରକୁ ଦେଉନି କେବେ ପଇସାଏ, ଚିଠିଖଣ୍ଡେ
ରମୀକାଳେ ତା' ଠାରୁ ମରିଛି
ମାଗିଯାଚି ବଙ୍କିଭାଇଙ୍କ ତିନିସାଲ ହବ
ଅଳପାଳି ଛୁଆଙ୍କୁ ପାଳିଛି ।

ବେଳେ ବେଳେ ସାରିଆମା' କାମଦାମ ବନ୍ଦକରି ଗୁମ୍ମାରି ବସିଯାଏ
ପୁରୁଣା କନିଷ ଗୁଡ଼ା ଚୁହିଁ ଚୁହିଁ, ଜଗତାର ଛିଣ୍ଡାଛତା

ମଳି ଅଣ୍ଟା ଲାଗିଥିବା ଝୁଲୁଥିବା କେତେଖଣ୍ଡ ଫଟା ଓ ଖେଳନା
ଅମାନିଆ ଲୁହ ସବୁ ଆଖିରେ ଜମାଟ ବାନ୍ଧେ
ସିଏ କାଳେ ବଡ଼ଘର ଝିଅ ଥିଲା ଭାରି ଅଲଅଳୀ
ବୋଉ ଭାଇ କେତେ ତାକୁ ସ୍ନେହ କରୁଥିଲେ
କେତେ ଥିଲେ ସାଙ୍ଗସାଥୀ ରଜଦୋଳି ପୁଚି ଖେଳିବାକୁ
ସେ ଭାରି ସୁନ୍ଦର ବୋଲି କେହ୍ବା ତାକୁ ଦଅନ୍ତାନି ଗାଳି
କିଏ କିଏ କହୁଥିଲେ ମାଣିଆଁ ସା ରମୀ ଆମ ବହୁତ କପାଳୀ ।

ସେ ଦିନର ରମୀ ଅପା ବାନ୍ଧା ହେଲା ରଜଦୋଳି ପୁଚିଖେଳ ଗୁଡ଼ି
କାଳକ୍ରମେ ମାଆ ହେଲା ସାରିଆ ଓ ସନା ଓ ଜଟିଆ
ବର୍ଷ ପରେ ବର୍ଷ ଗଲା ଚୁଲିର ପାଉଁଶ ହେଲା
ସେ ଦିନର ହୃତ୍‌ହୃତ୍ ନିଆଁ ।
କାଳପରି ଦିନଗୁଡ଼ା ଗଡ଼ିଗଲେ ତାର କିଛି ଜାଣିବା ଆଗରୁ
ବାସ୍ନା ଏବଂ ରଙ୍ଗ ସବୁ ଉଡ଼ିଗଲେ ଚମ୍ପାଫୁଲ ଗୁଡ଼ି ।
ଅଭିମାନୀ ଆଖି ତାର ବୁଲିଯାଏ ତା ହୃଦୟର ଗଳିଅର୍ଗଳିରେ
ଏବଂ ନିଷିଦ୍ଧ ସହରରେ ।
ନିଷ୍ଠୁର ସେ ଭୂମିକମ୍ପ କେଉଁ ବେଗି
କି ସୁନ୍ଦର ନଗ୍ରଟାକୁ ଛିନ୍‌ଭିନ୍ କରିଦେଲା
ନିଃସହାୟ ହୋଇ ଦେଖେ ତା ହୃଦୟର ଧୂଳିଆଡ଼
ନିଅଙ୍କର ବୁଡ଼ି ଆଣୀ ଜାଳି
କାନିଟାରେ ଲୁହ ପୋଛେ କିଏ ଦେଇ ଜଳାଇବ
ଏ ବିକଳ ମନନେଇ ପ୍ରେମର ମଶାଲ ।

ସେ ଦିନ ଯାଇଛି ଚାଲି ଗୋପପୁର କୃଷ୍ଣପରି ପିଠିକରି କେତେ ପରିଚିତ
ଗୋପୀଙ୍କୁ ଅନାଥ କରି ରାଧିକାକୁ ବିରମାଷୀ କରି
କହିଁକହିଁ କାନ୍ଦୁଥିବା ଯଶୋଦାଙ୍କ କୋଳ ଶୂନ୍ୟ କରି ।
ଯଦିବା ଜାଣୁଛି ସିଏ ତା' ପାଖରୁ ଦିନ୍ତଧୂଳି ଝୁଲିଗଲା
ଖାଲିମୁଣା ଦଦରା ମାଠିଆ ପରି ପଦାରେ ପଡ଼ିଲା
ପାରିସୁଟ୍ ଜାଲତାର କଣାହେଲା ପକ୍ଷୀସବୁ ଫଡ଼୍‌ଫାଡ଼୍ ଉଡ଼ିଗଲେ
ତଥାପି ସେ ନିକଟର୍ଚ୍ଚ ସମୟର ଟାପୁ ଏବଂ ଦାରିଦ୍ର୍ୟର ରଥଚକ ତଳେ ।

କାଲି କାଳେ ବାହାଘର ଧାଲି ତାଙ୍କ ଦଶାପୁର ଏଗାର ଗୃଳାଲା
ତା' ପାରୁ ଗୁଡ଼ିଲା ମନ ଜଗତାର, ତାର ଲାଗି ସିଏ ତା'ର ଝୁଆଙ୍କୁ ଭୁଲିଲା !

ଜଗନ୍ତା ଗୃହୁଁଛି ଘର ଗୃହକଡ଼ ଆଖିବନ୍ଦ କରି
ବସିବାକୁ ଠା ନାହିଁ ଝରିଆଡ଼େ ଝିପିଝିପି ବର୍ଷା
ପୁରୁଣା ସଢ଼ିଲ ପରି ଛୁଆନ୍ଦ'ଟା ସନା ଓ ଜଟିଆ
ପାତସିଆଁ କଂଥା ପରେ ଗଡ଼ୁଛନ୍ତି ଫୁଙ୍ଗୁଲା ଫୁଙ୍ଗୁଲା
ଅନ୍ଧାରରେ ସନାମାଆ ଉଣ୍ଡାଳୁଛି ପୁରୁଣା ମହମବତି
ବତି ଜାଳି ସିଏ ତାର ସ୍ୱାମୀଙ୍କୁ ଦେଖିବ
ପାରିଆ ଯା' ଅନେଇଛି ତାର ହେନ୍ତ୍ର ସ୍ୱାମୀ ଆଡ଼େ
ସିଏ ତାକୁ ତିନିବର୍ଷ ତଳେ ବୋଧ ଦେଇ କହିଥିଲେ
ରମୀ·ମୋର କାନ୍ଦବୁନି ଝଟିଦବୁ ମୁଁ ଫେରିବ ଛଅମାସ ରହି
ଆଣିଥିବ ତୋହପାଇଁ ସୁନାଧଡ଼ି ଶାଢ଼ୀ ଆଉ ହାର
କପରି ରହିଲେ ସିଏ ଏପରି ନିଷ୍ଠୁର ହୋଇ କରି ପାତପର ।



# ଶାଳଗ୍ରାମ

ବରଷା ଋତୁରେ । ଝରଙ୍କର ଇଚ୍ଛା ହୁଏ ମିଶିବାକୁ
ସମୁଦ୍ର ସାଥିରେ । ପୃଥିବୀର ପ୍ରାଣୀଙ୍କ ମନରେ
ଅନ୍ଧଭୁକ୍ତ ପ୍ରଶ୍ନ ଆସେ, ପର୍ବତରେ ଦେହ ଘସେ
ଆବୁଡ଼ା ଖାବୁଡ଼ା—ଇଚ୍ଛା ହୁଏ ମସୃଣ ହେବାରେ
ଯେ କେନେ ମସୃଣ ହୁଏ ଆସମାନ ବର୍ହିଅଙ୍ଗ
ଲଭ କର ସଂଥ ସଙ୍ଗ, ସଞ୍ଚିତ ପ୍ରାରବ୍ଧ ଏବଂ ବର୍ତ୍ତମାନ
ହୁଏ ଏକାକାର, ବୈରାଗ୍ୟ ସ୍ୱକାର ଦିଗ୍‌ଦର୍ଶନ
ବାୟୁ ସଂରକ୍ଷଣ, ଯେ ଆନନ୍ଦ ମିଳିବାରେ
ସ୍ୱଚ୍ଛଳ ହେବାରେ, ସେ ଆନନ୍ଦ ଏକାକାର
କୈବଲ୍ୟରେ, କୁଦାମାଣ କଅଁଳା ବାଳୁଙ୍ଗ ପରି
ଡେଇଁବାରେ, ସେ ଆନନ୍ଦ ପଥରର ମସୃଣ ହେବାରେ ।

ଗଡ଼ି ଗଡ଼ି ସହସ୍ର ଯୋଜନ, ସହି ସହି ହର୍ଷହ୍ରିପ୍
ଅପମାନ, ପ୍ଲାବନ ପତନ, ଢାଳଦେଇ ଯୌବନର
ଅହଙ୍କାର ପୁଷ୍ପାଞ୍ଜଳି ପରି, ଶୀତଳ କୋମଳ ହେବା
କଣସାର ସମସ୍ତରେ ମ୍ଲାନ ।

ଏହି ସେହି ଶାଳଗ୍ରାମ ଗୁରୁ ମୋର
ଅଚିହ୍ନା ଅତିଥି, ତେଜ ପାର୍ବତ୍ୟ ଶିଖର
ସହି ସହି ଜଳାଘାତ, ବଜ୍ରର ପ୍ରପାତ
ଗଡ଼ଡାଳ ଆଘାତ,
ଆଜି ଆସି ଉପଗତ ଏଠି, ଏହି ପ୍ରଚ୍ଛନ୍ନ ଝୁଙ୍ଗୀରେ ।
କିଏ ବା ପଶୁରେ ଚାଲୁ, କିଏ ବା ପାଉଛି ନିଏ
କିଏ ଖୁହେଁ ଶାଳଗ୍ରାମ ଅନ୍ତର ମଧ୍ୟରେ ?



# ଶାରତ

ଶରତର ଝର୍‌ବଣେ ପବନ ଲହରୀ । ଆମ ସାଇ
ଦାସିଆ ବାଉରୀ କରୁ ସଂଭ୍ରମ ସାଧକ, ନାହିଁ
ମାନ ଅଭିମାନ ନୁହେଁ ପର ଅପକାରୀ । ସିଦ୍ଧାନ୍ତ ଓ ସମାଧାନ
ସେଥିପାଇଁ କାହିଁ ତା'ର ବ୍ୟାକୁଳତା-ଘୃଣଶାଳୀ ବୁଢ଼ା ଅବଧାନ
ଚାଉଥାଲି କଳା ଶାଗ ଖାଉଁ ଖାଉଁ ଦେଖାଦେଲ ଦାରୁବ୍ରହ୍ମ
ଜଗା ଓ ବଳିଆ ତାଙ୍କ କଳାଦେହ ଧଳାଆଖି ଧଳାଦେହ କଳା ଆଖି

ଆନନ୍ଦେ ତନ୍ମୟ ହେଲ, ଦେହ ତା' ରୋମାଞ୍ଚ ହେଲ, ଦେଖି
ତାଙ୍କ ସ୍ୱର୍ଗୀୟ ପ୍ରତିଷ୍ଠା, ଆଉ ପରିଚିତ ଅସଂଖ୍ୟ ପୁଲକ
ମୁଁ କନ୍ଥୁ ବାଦଲ ଦେଖି ଭାବ ଦେଲି କେଉଁ ଚନ୍ଦ୍ରା ଝିଅଟିର
ମୁହଁ ଗୋଟାଯାକ, ସେଇଟାତ ଚନ୍ଦ୍ରାର ଫରକ, ମୋର
ଏବଂ ଦାସିଆର, ତୁମର ଆମର କମ୍ପା ଆଉ ସବୁ ବଂଧୂମାନଙ୍କର

ଶରତର ଇଦ୍ଭୁଶ ବୈଚିତ୍ର୍ୟ କିଏ ଜାଣେ ପରୂଚିଲ
ମୋତେ ଏବଂ ଦାସିଆକୁ, ନେପଥ୍ୟରେ କୋଳାହଳ କଲ୍ ବାଲ
ପକ୍ଷୀଙ୍କୁ—କିଏ କଲ୍ ଏତେ ରଙ୍ଗ ଏତେ ଉଜ୍ଜ୍ୱଳତା
ମନରେ ପୁଲକ ପାଇଁ କିଏ ସତେ ପହଞ୍ଚାଏ ଏତେ ଶୁଭବାର୍ତ୍ତା ?



# ବସନ୍ତ

ବସନ୍ତ ପ୍ରବାହ । ଖୁସି ଗଲେ ଗୃହକର୍ତ୍ତାଙ୍କୁ ଭଲ
ନାହିଁ ଘରଜଣଙ୍କ ଦେହ । ଫାଲ୍‌ଗୁନ କରୁଛି ଗାଆଁ
କଣାସେଣ୍ଟ ଚରିଥିବା ଫସଲ ସମୂହ ।
ପେନ୍ଥା ପେନ୍ଥା ବଉଳଙ୍କ କୁହୁଡ଼ିରେ ଅନ୍ତର୍ଦାହ
ପୋକଙ୍କର ମିଠାମିଠା ଖୋସକ ସନ୍ଦେହ ।
ଏକୁଟିଆ ବୁଲୁ ବୁଲୁ ହଠାତ୍ ମୁଁ ଖୁସିଦେଲି
ମେଳଣରେ ଦେଖିଥିବା ଝିଅଟିର ବେଣୀ ଏବଂ ମୁହଁ
ମନକୁ ମୋ ଭିଆଇଲା, ସବୁବେଳେ ବେକ ମୋଡ଼
ଗୁହିଁବାଟା ନୟପଦ ନୁହଁ, କଷ୍ଟାକଷ୍ଟା ଖାଲିତିପ
ଆଉ ମଧ ଶାସକ ବକ୍ତୃତାର ଭୟ ।
ଅସଜଡ଼ା ଅଞ୍ଚଳକୁ ଫେରିବାକୁ ମନଟାର ଅତ୍ୟନ୍ତ ଆଗ୍ରହ ।
ଏ ସବୁ ଘଟଣା ଦେଖି ପକ୍ଷୀମାନେ ବାହାରିଲେ
କରି ରାଜ୍ୟ ଜୟ ।

ଦକ୍ଷିଣାପବନ, କରଦ୍‌ଗବ ସନ୍ତାରୁ ନାହିଁ ପରିତ୍ରାଣ ।
ଜଙ୍ଗଲରେ ବଂଶୀ ବାଜେ, କଦମ୍ବ ଗଛରେ ଝୁଲେ
ଷୋଳସହସ୍ର ଗୋପୀଙ୍କର ପାଲଟା ବସନ ।
ସ୍ୱପ୍ନ ସବୁ ଚୂର୍ଣ୍ଣ ହୋଇ ଯାନ୍ତି ଯେମିତି ତାଙ୍କ ଜ୍ଞାତି ପରିଜନ
ପଞ୍ଚବଟୀ ଅରଣ୍ୟରେ ରାମଚନ୍ଦ୍ର ଧାଉଁଛନ୍ତି
ଆଗେ ଦେଖି ସୁନାର ହରିଣ ।
କ୍ଷତ ସବୁ ପୂର୍ଣ୍ଣ ହେଲେ ନୂଆ ପତ୍ର କଅଁଳିଲା
ବୁଢ଼ୀଆଣୀ ନୂଆ ଜାଲେ କଲା ଆଚ୍ଛାଦନ ।
ବୁଢ଼ା ମାଷ୍ଟ୍ରେ ବୁଝାଇଲେ ପିଲାମାନେ ମନ ଦେଇ
କର ଅଧ୍ୟୟନ, ଅନ୍ୟକୁ ଈର୍ଷା କରିବା ଅନୁଚିତ
କାମନାହିଁ ଦୁଃଖର କାରଣ ।

ଖୁଣନ୍ତୁ ସଜ୍ଜନବୃନ୍ଦ ଏ ବସନ୍ତ ପରାକ୍ରମ
ଅଯୋଧ୍ୟାରେ ଗୋପପୁରେ ମଥୁରା ନଗରେ ।

ଝଲକାଏ ପବନରେ ଅଭୁଲା କୁନ୍ତଳ
ଅନ୍ଧଟିର ଆଶାବାଡ଼ି, ଘଣ୍ଟା ମୁହାଁ ପଲପଲ ମଣିଷଙ୍କ
ବୟସ ଓ ରୂପଭେଦ, କୃଷ୍ଣ ଯିବେ ମଥୁରାକୁ
କଂଶର ଧମକ ।
ସ୍ୱଚ୍ଛ ମନରେ ବସି ଅକ୍ରୁର ଭାବିଲା
ରାଧାଙ୍କର ଭାଗ୍ୟଫଳ ନନ୍ଦଙ୍କ କପାଳ
ଅଟାଡ଼ୁଆ ରାଜାଟାର ପାଳବଣ୍ଡା ମନ୍ତ୍ରୀ ଦଳ ଦଳ
ରାତିର ଅନ୍ଧାର ପରେ ଭଲଲାଗେ ଫଗୁଣ ସକାଳ
ପୋକଜୋକ ମେଳ ହୋଇ ବାହାରିଲେ ଯାତ୍ରା ଦେଖି
ବେଢ଼ିବାକୁ ଦରସଢ଼ା ଲୋକଟାର ଆବୃତ କଙ୍କାଳ ।

କେ ଭାବୁଛି ଫୁଲ କଥା, ବସନ୍ତର
ମାଦକତା, ପ୍ରାକୃତିକ ପରିବେଶ
ନଈବାଲି, ସମୁଦ୍ର ଲହଡ଼ି,
ନାହିଁ ଯହିଁ ଶ୍ରାବଣର ଝରିବର୍ଷା, ନଈବଢ଼ି
ବିଜୁଳି ଓ ମେଘ ଘଡ଼ଘଡ଼ି
ଏଠି ସେଠି ବସନ୍ତର ସାଜସଜ୍ଜା
ପବନରେ ପ୍ରେମର ଗାରେଡ଼ି ।
ଅନ୍ଧର ଯନ୍ତ୍ରଣା, ଯିଏ ହଜାଇଛି ଆଶା ବାଡ଼ି
ବଞ୍ଚିବାକୁ ବ୍ୟଗ୍ର ଯିଏ ଘୁଷୁରି ଘୁଷୁରି
ତା' ପାଇଁ ବସନ୍ତ ଏକ ଭିନ୍ନ ଅବହେଳା
ଲାଞ୍ଛନା ଓ ଅପମାନ
ପ୍ରେମ ଏକ ଦିଗ୍‌ବଳୟ ମନଗଢ଼ା
ପବନରେ ଶୁଖିଯାଏ ତା' ଆଖିର ଲୁହ ବୁନ୍ଦାମାନ ।
ପ୍ରେମ ଓ ସୌନ୍ଦର୍ଯ୍ୟ ସବୁ ଚେଡ଼ିଭର୍ତି ବଞ୍ଚିବାର ତିକ୍ତତା ବାହାରେ
ପୋକଜୋକ ଫେରୁଛନ୍ତି ମାଂସ ସବୁ ସରିଗଲେ ପରେ ।



# ଶରତ ସମୟ

ଶରତ ସମୟ, ନଈରେ ଗୋଳିଆ ପାଣି, ନାହିଁ
ଆଉ କୁମ୍ଭୀରଙ୍କ ଭୟ । ମୁଁହକୁ କୁଷ୍ମଣ୍ଡା କରି ବୁଢ଼ୀଆଈ
ବାହୁନାଇ କାହିଁଗଲା ଯୁବାବୟସ ହାୟ ! ଯୌବନର ଫୁଲର
କେଶର, ସମୟ କ ମହୁମାଛି ଲୁଟି ନେଲେ ରଙ୍ଗବାସ୍ନା ତାର ।
ଗୁଳଗଲେ କରି ନିଃସହାୟ । ଫୁଲେଇ ଜହ୍ନର ହସ
ଈର୍ଷାର ଓ ବେଦନାର କଣ୍ଟକିତ ବାକ୍ୟ ବିନିମୟ
ବାବୁମାନେ, କଲି ଦେଖି ଶରତର ଲିଙ୍ଗ ଏବଂ ପ୍ରକୃତି ନିର୍ଣ୍ଣୟ ।
ପଙ୍କ ଓ ପଙ୍କାଣୀ ମଧ୍ୟେ ନାନାଜାତି ପ୍ରଜାପତି, ଫୁଲ
ଏବଂ ସେମାନଙ୍କ ଭାବ ବିନିମୟ ।
ଏ ସବୁ ସାମଗ୍ରୀ ଧରି ଏ ଶରତ ଫେରିକରେ
ଫେରିବାଲା ତାର ପରିଚୟ ।

ଶରତର ସଂଧ୍ୟାପରି ବୁଝିବାର ଜାଣିବାର ଅସ୍ପଷ୍ଟତା
କିଏ ଜାଣେ କାହାକଥା ସେମାନଙ୍କ ଅନ୍ତରର ଅକୁହା କବିତା
ଏତେ କ୍ଷୀଣ ଆଲୁଅରେ ରୋଗଗ୍ରସ୍ତ ଲୋକଟାର
କନ୍ଦାକଟା, ମାତୃହୀନ ପିଲାଟାର ମନସ୍ତତ୍ତ୍ୱ ମଥିତ ବେଭାର
ପୁଞ୍ଜିଭୂତ କୋହ ଏବଂ ପରିତ୍ୟକ୍ତ ଜାଗା ଖଣ୍ଡିକର ।
ଲାଜଟା ନିର୍ମମ ଦେଖୁ, ଏ ସ୍ଥାନକୁ ପଶିଆସେ ନିଜବାଟ ଭୁଲି
ସୁନ୍ଦର ସ୍ୱପ୍ନଙ୍କୁ ସବୁ ସ୍ଥାଣୁକରେ ମନ୍ତ୍ରଧିକ ଫିଙ୍ଗି ।

ବହୁଲୋକ ଫେରିଗଲେ, ଭୂତ ଓ ଡାହାଣୀ ହେଲେ
ଅନେକ ଦ୍ରବ୍ୟ ଭାଙ୍ଗିଲେ ଉପଦ୍ରବ କଲେ ।
ସଂପର୍କକୁ ହାହାକଲେ ଲୋକଦେଖା କନ୍ଦାକଟା କଲେ ।
ଫେରିବାଲା ଅନାଇଲା ନିଷ୍ପ୍ରାଣ ଓ ନିରୁପାୟ ହୋଇ
କରିବାକୁ ଚାହୁଁଥାଇଁ କିଛି ସିଏ କରିପାରୁ ନାହିଁ
ମୁଁ କହିଲି, ତୁମ୍ଭେମାନେ ତା'ମନକୁ ବୁଝିବାକୁ ଚେଷ୍ଟାକର ଥରେ
ଏତେ ଗୁଡ଼ା ଚାଗିଦାଙ୍କୁ କିଏ କେବେ ପୂର୍ଣ୍ଣ କରିପାରେ ।

ଶରତ ପ୍ରଭାବ । ପ୍ରକୃତିର ସାମୟିକ ଅନ୍ତସତ୍ତ୍ୱା
ଭାବ । ଖରଫୁଲ ହାତଧର ପଶ୍ଚରଲେ ସୀତା
ଆହେ ରାମ, ଏମାନଙ୍କ ବାକ୍ରୃତ ସ୍ୱଭାବ । ହଲବାକୁ ଉଶ୍ୱାସ
ଓ ଭୁଲିବାକୁ ପାରଙ୍ଗମ । ମନୋରମ ସରଳ ବିଶ୍ୱାସ ।
ସ୍ତ୍ରୀଙ୍କ ହୃଦୁଥିରେ ହୃଚ୍ଛ ଅନୁଭବ । ମୂରଲୀ ଡାକିଲା
ଆସ ଗୋପବାଳୀ, ତୁମେ ସବୁ ଜାଣିଲା ଶୁଣିଲା
ଜାଣୁଥିବ ଆମ୍ଭ ମନୋଭାବ ।
ନିଶବଦ ଅଧବାକ୍ତ, ଏତ ଗୋଟେ ଆଦିମ ପ୍ରବୃତ୍ତି
ଏବଂ ସ୍ତ୍ରୀରଜାତି ପୁରୁଷଙ୍କୁ ନାଶ୍ରୀ ସ୍ତ୍ରୀରଜାତି ।

ଶରତ ଋତୁରେ ଥରେ ବେଗି ବେଗି ପବନ ବହିଲା
ଏବଂ ସୁନ୍ଦର ପ୍ରଜାପତିଙ୍କ ଡେଣା ଭାଙ୍ଗିଗଲା । ଏବଂ ସେ
କହିଲେ ହେ ଶରତ, ଆମ ଡେଣା ଯଦ୍ଦାବା ସୁନ୍ଦର ରଙ୍ଗୀନ୍ ହୁଏ
ତୁମର କି ଯାଏ । ଆମ ଡେଣା ଭାଙ୍ଗିଦେଇ କରିଛ ଅନ୍ୟାୟ
ଭଲ ଡେଣା ଆଣି ଦିଅ, ଡେଣା ଗୁଡ଼ି ବଞ୍ଚିବାଟା ବଡ଼ ଦୁର୍ବିସହ ।
ଶରତର ଦେହ ଧଳା, କଇଁପଦ୍ମ ଟଗର ଚମ୍ପା ଧଳା
ତୁଳାଭଣା କାଶତଣ୍ଡି ଫୁଲବଣ ଧଳା, ଗାଆଁ ନଈବାଲି ଧଳା
ଶାମୁକା ଗୋଟାଉ ଥିବା ଝିଅଟିର ଶାମୁକା ଓ ବେଣୀତଳ ପିଠିଧଳା
ଉଡ଼ନ୍ତା ବାଦଲମାନେ ଚୋପଧଳ, ବଗ ଓ ବଗୁଲି ଧଳା
ଜହ୍ନମାମୁଁ ଖୁବ୍ ଧଳା, ନୂଆବୋଉ ଶାଢ଼ୀ ଓ ବ୍ଲାଉଜ ଧଳା
ଶରତର ସବୁ ରଙ୍ଗ ଧଳା ।

ସେ କହିଲା ଶୁଣ ତେବେ, ଅସନ୍ତୁଷ୍ଟ ଯେତେ ପ୍ରଜାପତି
ଦେଲି ଏ ନିଃସଙ୍ଗ ରଙ୍ଗ ଯାକୁ ନେଇ ବୁଝ ଅନୁଭୂତି ।



# ଜହ୍ନ ୩

ଜହ୍ନ ଦେହ ଛୁଇଁବାକୁ ବହୁ ପକ୍ଷୀ ଉଡ଼ଛନ୍ତି ଆକାଶର
ଅଗମ୍ୟ ନୀଳକୁ,
ଭେଦକରି ସ୍ତର ସ୍ତର କଳାଧଳା ରଙ୍ଗୀନ୍ ବଉଦ
ଫେଣା ଫେଣା ମହୁ ପିଇ ଅଗଣନ ମହୁମାଛି ବ୍ୟସ୍ତ ହୋଇଛନ୍ତି
ଜହ୍ନ ଫୁଲ ମହୁ ଶୋଷି ଜହ୍ନ ବେଣୀ ବାସ୍ନା ଶୁଙ୍ଘିବାକୁ ।
ଠେଇଁ ଠେଇଁ ବାଜପକ୍ଷୀ ବହୁଥର ଝାମ୍ପିଛନ୍ତି ମତ୍ତଭ୍ରମ ହୋଇ
ଜହ୍ନ ଦେହ ପ୍ରତିବିମ୍ବ କାଟକେନ୍ଦ୍ର ଝରଣା ଜଳରେ
ତା କୂଳର ଗ୍ରେଟବଉ କେତେ ଗଛୁଁ ଫୁଲପତ୍ର ଖସିଛନ୍ତି
ସପନରେ ଘାରି ହୋଇ ଜହ୍ନ ଦେହ ସ୍ପର୍ଶ ପାଇବାକୁ ।

ନିତାନ୍ତ ବିସ୍ମିତ ହେଲି ଏମାନଙ୍କ ଗତି ଦେଖି,
ସ୍ୱାଙ୍କ ଠାରୁ ମୁଁ କିନ୍ତୁ ଫରକ
ଏ ଚଣ୍ଡାଲେ ଜାଣନ୍ତିନ ସେହି କେନ୍ଦ୍ର, ସେଇ ବୃତ୍ତ ସେଇଥିଁ ସ୍ପର୍ଶକ ।
କେଉଁ ବ୍ରାହ୍ମ ମୁହୂର୍ତ୍ତରେ ମୁଁ ହୁଏତ ଭାବନେଲି, ଏପରିକି ହୁଏ
ମାମୁଁଘର ଯିବାଲାଗି କେତେଗୋଟା ଅଙ୍କାବଙ୍କା
କେତେଗୋଟା ସିଧା ରାସ୍ତା ଥାଏ ।

ଏକଦା ଆକାଶ ଥିଲା ପରିତ୍ୟକ୍ତ ଅତି ନିକାଞ୍ଚନ
ଝରଣାର ଜଳ କିମ୍ବା ମୋର ମନ ପରି ସ୍ୱଚ୍ଛ ଏବଂ ଭାବ ଉଦ୍ଦୀପକ
ମୁଁ ଚାହିଁଲି ଜହ୍ନଆଡ଼େ ଆଖି ଯେ ଝଲସି ଗଲା
ତା ଦେହରେ ଏତେ ପ୍ରତିଶ୍ରୁତି
ଧୂଆଁର କୁଣ୍ଡଳୀ ପରି ମୁଁ ଉଠିଲି ଭେଦକରି
ଆଲୋକର ଶିଖା ଆଉ ତାତି ।

ଆକାଶର ପକ୍ଷୀ ମୁଁତ ଆକାଶ ମୋ ଘର ଓ ସଂସାର
ଆକାଶର ଶୀକାରୀ ମୁଁ ମୁହିଁ ଜାଲ ମୁଁ ପୁଣି ଆଧାର
ଆକାଶର ଦପଣୀରେ ମୁଁ ଦକଛି ବୋଝ ବୋଝ
ମୋ ଦକ୍ଷତା ମୋର ପ୍ରଗଳ୍ଭତା
ତଥାପି ଉଡ଼ୁଛି ମୁହିଁ ବାଜ କିମ୍ବା ବଣି ପରି-
ଜହ୍ନଠାରେ ବହୁତ ମମତା ।



# ଫୁଲବାଲି

ଫୁଲବାଲା, ଫୁଲବାଲା, ତୋ ଫୁଲର ଦାମ୍ କେତେ
ଏଇ ଯେତେ ସଜଫୁଲ ହରେକ୍ ରଙ୍ଗର ?
ଫୁଲଠିଁ ଆମର ମୋହ ବିଶେଷତଃ ଏମାନଙ୍କ ରଙ୍ଗବାସ୍ନା ପାଇଁ
ଫୁଲପାଇଁ ଏ ଆମର ଅନ୍ତର୍ଦାହ କୁଆଁତାରା ଅନେକ ରାତିର
କହିଲୁଲୋ ଫୁଲବାଲା, ସତକରି
ଫୁଲ ସବୁ ତୋର ନା' ଆମର ?

ଫୁଲ ତ ଗବାଖ ରୁହେଁ ଆମେ ସବୁ ଚାହାର ଗ୍ରାହକ
ଏ ଫୁଲ ଫୁଟିଲେ ଯେବେ ବୃନ୍ତ ପରେ କଢ଼ି ଖୋଳ ଗୁଡ଼
ତୋ ଦେହରୁ ଲୁଟିନେଇ ସତର୍କରେ ରଙ୍ଗ ଓ ମହକ
ସେ ସବୁ ଜାଣିଲୁ ଆମେ ଅନ୍ତର୍ଯାମୀ, ସୃଷ୍ଟି କଲୁ ମେଘ ଘଡ଼ଘଡି
ତଟସ୍ଥ ଫୁଲଙ୍କୁ ସବୁ ବନ୍ଦୀକଲା ଏଇ ତୋର କାଇଁଚ ଗୃଙ୍ଗୁଡ଼ି ।

ଏଥୁଅନ୍ତେ ବହୁଦିନ ଅନ୍ତହେଲା ଶୁଣ ସଭାଜନେ
ସେ ଦିନ ବିକଲା ଫୁଲ ଫୁଲବାଲା ଫୁଲ ସବୁ ଆମ୍ଭ ଦ୍ରବ୍ୟ ହେଲେ
ଆମେ ସବୁ କାଳକ୍ରମେ ବନ୍ଦୀହେଲୁ ସୃଷ୍ଟି କରି ସ୍ଫଟିକ ଶିଙ୍କୁଳି
ଫୁଲସବୁ ମାଳା ହୋଇ ଫୁଲତୋଡ଼ା ହୋଇ
ମନେ ମନେ ବାଛିନେଲେ ଆପଣା ଗ୍ରାହକ
ଆମଘର ଫୁଲବାଲି ତାଙ୍କୁ ନେଇ ଗଭାରେ ମଣ୍ଡିଲେ
ଫୁଲସବୁ ସ୍ୱପ୍ନ ସୃଷ୍ଟି କଲେ ।
ସ୍ୱପ୍ନସବୁ ବଡ ହେଲେ
ଏଇ ହେଲା ଆମ ଘର ଭିତିରି ଖବର
ସେ ପଢ଼ିଲେ ପାଠିକାର ଛବି ବହି
ବରଗଛ ମା' ବର ରବର ।

# ତୁମ ସଂପର୍କରେ

କିଏ ଯାଏ କିଏ ଆସେ
ତାଙ୍କ ଯିବା ଆସିବାରେ କା'ର [illegible] ଦରକାର ଥାଏ
ତୁମ ଯିବା ଆସିବାକୁ
କିଏ ଜଣେ ଚାହିଁ ରହିଥାଏ,
ସେ କାହିଁକି ଚାହୁଁଥାଏ ମୁଁ ଜାଣେନା
ଜାଣେନାହିଁ କେହିଁ
ବାଲିଗରଡ଼ାର କଥା ସମୁଦ୍ରର ଅସରନ୍ତି
ମାଲ ଜାଣେ ନାହିଁ ।
ତାର ମନ ଦର୍ପଣୀରେ ତୁମେ ଦ୍ରବ୍ୟ ତୁମେହିଁ ପରଖ
ପୂଜା ଓ ପାର୍ବଣ ସବୁ ବିକୁଥିବା ଯେତେ ଲୋକବାକ
ତୁମେ ଯେବେ ଚାଲିଯାଅ କଣ କହୁ କହି କହି
ସାଙ୍ଗଙ୍କ ମେଳରେ
ମନତାର ଲାଖିଯାଏ ତୁମ ପିନ୍ଧା ଶାଢ଼ୀର ମୀଳରେ
ବେଳେବେଳେ ଭାବିଦିଏ ତୁମେ କାଳେ
ତାକୁ ଥରେ ପାଖକୁ ଡାକିବ
ସବୁକଥା ପଚାରିବ ଏବଂ ତାକୁ ଆପଣା କରିବ ।
ତୁମେ ତାକୁ ଚାହିଁନାହିଁ ଏଠି କମ୍ପା ସମୁଦ୍ର ବାଲିରେ
ବାଲିଯାତ୍ରା ଡେଉଆରେ ଅବା କେଉଁ ଚୂଡ଼ି ଦୋକାନରେ
ସେ ଜାଣେନା କାହିଁକି ସେ ଚାହେଁ
ଚାହିଁତାକୁ ବାଧ୍ୟ ଅବା ସିଏ ।

ହେ ଦର୍ଶକ ! ଏଇ ଦେଖ ଗ୍ୟାଲେରୀର ଆଠାସିଠ ଯଦି ଖାଲିଥିବ
ସେଠି ପାଇଁ ବସିଯାଅ, ଆଗରେ ବସିଲେ କିଆଁ ପଛକୁ ଚାହିଁବ ?
ତୁମେ ଚାହୁଁ ସେଇ ଆଡ଼େ ଯାହା ଆମ ଦେଖିବାର କଥା
ଯଦି ପାର ତାହା ଦେଖି ଭୁଲିଯାଅ ଅନ୍ତରର ଅସଂଖ୍ୟ ବ୍ୟସ୍ତତା
ଡାକିବାକୁ ଛଠି ଦେଇଯାଏ ସେ ଛଠିର ଅସଂଖ୍ୟ କାରଣ
କିନ୍ତୁ ଥରେ ଲେଖାଥାଏ ଗଙ୍ଗାକାଳୀ ଚରଣେ ଶରଣ ।

# ଅକ୍ଟୋପସ୍

ବିବାହର କିଛିଦିନ ପରେ ଫୁଲମାନେ ହୋଇବେ ପଥର
ସାଥିଏ ମୂଢ଼ଙ୍କ ହସି ପଚାରିବେ ମହାମନ୍ତ୍ରୀ
କଣ କଣ ରାଜ୍ୟର ଖବର । ସବୁ ଭଲ ରାଜ୍ୟରେ କୁଶଳ ।
ସିଏ ସବୁ ଚାଲିଗଲେ କୃତ୍ୟ କୃତ୍ୟ ହୋଇ,
ମୁଖାଟିକୁ ଖୋଲି ଦିଅ, ଆତ୍ମରକ୍ଷା କର ।

ବିବାହର କିଛିଦିନ ପରେ ଚାଲିଯାନ୍ତି ଫୁଲ ଓ ଫଗୁଣ ।
ଗୀତମାନେ ମୂକ ହୋନ୍ତି, ରହିଯାଏ ମାତ୍ର ଭଣ ଭଣ
ପ୍ରେମ ଓ ପୂର୍ଣ୍ଣିମୀ ରାତି, ପ୍ରାବଲ୍ୟ ଓ ପାଗଳାମୀ
କାମନାର ଫେରିକାମୀ, ଝରିଯାନ୍ତି ବିନ୍ଦୁ ବିନ୍ଦୁ ହୋଇ
ସ୍ୱପ୍ନସବୁ ଚାଲିଯାନ୍ତି ହୋଇ ଜଣ ଜଣ,
ରହିଯାଏ ଆଡ଼ୁଆଣ, ବାହାରଟା ଚକଣଚିକଣ,
ଭିତରେ ଗୋବର ମାଟି, ଝାଟିମାଟି ଦରପଚି ଛଣ ।
ପଞ୍ଚୁରଙ୍ଗୀ କାଗଜ ଯେ ପୋଡ଼ିଲେ ପାଉଁଶ ହୁଏ
କାନ୍ଥବାଡ଼ ଅଳନ୍ଧୁ ବିରୁଡ଼ି ବସା
ଘର ସାରା ଲାଳ ଲୁହ ସିଙ୍ଘାଣିରେ ସାଲୁବାଲୁ ଦାଗୀଙ୍କ ନନ୍ଦନ ।
ମାଟିଆ ଝୁଲକୁ ଧରି ଚାଲିଲେ ତଗାବି ଋଣ
ମହାଶୟ, କିଣିବାକୁ କାଠ ଡାଲି ଜରା ଓ ଫୁଟଣ ।

ସମସ୍ତଙ୍କ ସତ ବୋଧେ ସୂର୍ଯ୍ୟାସ୍ତ ବା ସୂର୍ଯ୍ୟୋଦୟ
ଖୋଲିବାକୁ ଖୋଳପା ଓ ମୁଖ, ଇନ୍ଦ୍ରଧନୁ ମିଶିଯିବା
କ୍ରମଶଃ ଅସ୍ପଷ୍ଟ ହୋଇ ବଉଦରେ, ମରିଚୀକା
ଲୀନ ହେବା ନିସ୍ପୃକ ବାଲିରେ । କାମନା ଘନିଷ୍ଠ ହେଲେ
ଯାହା କିଛି କହିହୁଏ ନିଦରେ ବାଉଳି ହୋଇ
ତାହା ସବୁ ପ୍ରେମ ହୋଇ ରହିଯାଏ ପେଡ଼ିଶାଢ଼ୀ ହୋଇ ।

ବଡ଼ପଣ୍ଡା କହିଥିଲେ କେତେଟା ନିର୍ମମ ସତ୍ୟ ମଧ୍ୟ
ଦେଇ ବଞ୍ଚିବାକୁ ହେବ, ଫୁଲରୁ ମହକ ଯିବ,
ଅନେକ ସଜାଡ଼ି କିଛି ଅସଜଡ଼ା ରହିଯିବ ।



# ପଲ୍ଲୀପତନ

ବନସ୍ତରେ ବାଘ ଭୟ ବାର୍‌ଗହା ଭୟ ସମୁଦ୍ରରେ ସାଙ୍କୁଚଙ୍କ ଭୟ
ଗଛରେ ଫୁଲ ଶାଗୁଣା ଅପନ୍ତରା ବାଳରାଜ୍ୟେ ଶାମୁକାଙ୍କ ମୃତଦେହ
ନଈରେ ଅସଂଖ୍ୟ ମାଛ ନାଲିନେଳି ହରେକ ରଙ୍ଗର
ତଥାପି କରିବ ମୁହିଁ ଜଳଯାତ୍ରା ମୋ ଦେହର ନିରାପତ୍ତା ପାଇଁ ।
ଏ ଦେହ ଥିଲେ ସବୁ ପାଇ, ଜଙ୍ଗଲ ଯେସନେ ଚନ୍ଦ୍ରଗୁଳ ।

ଏ ଯେଉଁ ଲୋକଟା ଆସେ କାନ୍ଧରେ କୁରାଢ଼ୀ ଧରି ପାଇକଙ୍କ ଭଙ୍ଗି
କାଠର କଠଉ ମାଡ଼ି କଣ୍ଟାଜଣ୍ଟା ମାଡ଼ିଦଳି ଯାଏ
ମୁଣ୍ଡରେ ଠେକରା ବାନ୍ଧି ପ୍ରଜାପତି ନଶ ମୋଡ଼ି ମୋଡ଼ି
ସୁଦକ୍ଷ ଶିକାରୀ ସିଏ ଆଜି ଯେଣୁ କଣ୍ଟାକାଠ ଶିକାର କରିବ
ଛ'ଖଣ୍ଡ କାଠଗଡ଼ ତା'ପାଇଁ ଲୋଡ଼ା କାଳେ ହେବ ।

ଦେଖୁଛତ ହେ ଶିକାରୀ ଏ ବଣରେ ବାଘ ମାତିଛନ୍ତି
ତୁମର ବି ଭାଇବନ୍ଧୁ କୁଟୁମ୍ବ ଅଛନ୍ତି
ଆଜିବି ଦେଖୁଛ ତୁମେ ଆଖିଗଛ ପଶୁଛନ୍ତି--ମାଡ଼ିଯାକ ଲୁହାର ଶାଳରେ
ରଢ଼ରାଢ଼ି ମଡ଼ମାଡ଼ି ହୁଙ୍ଗୁଛନ୍ତି ଏଠି ରସ ସେଠାରେ ଗରଦା
ପାପକରି ବୁଢ଼ାହେଲ ଦାନ ଦେବ ସୁନାର କଙ୍କଣ
ଏ ପୋଖରୀ ପଙ୍କଶୂନ୍ୟ ଆଉ ତୁମେ ଷଡ଼ଙ୍ଗୀ ବ୍ରାହ୍ମଣ ।
ନସ୍ୱାଦ କାଠ କଠାଳୀ ତୁମ ମାଂସ କେତେ ମିଠା ଏମାନେ ଜାଣନ୍ତି
ସୁବିଧାକୁ ଉଣ୍ଡି ଉଣ୍ଡି ତେଣୁ ସବୁ ଥୋଡ଼ିକୁ ଖୁଣ୍ଟନ୍ତି ।

ନଈରେ ଅସଂଖ୍ୟ ମାଛ ନାଲିନେଳି ହରେକ୍ ରଙ୍ଗର
ଅଥଚ କରିବ ମୁହିଁ ଜଳଯାତ୍ରା ମୋ ଦେହର ନିରାପତ୍ତା ପାଇଁ ।
କାଠୁରିଆ କାଠ କାଟେ କାଠ ଚିରେ ସେ କାଠରେ
ହୁଳଡଙ୍ଗା କରେ, କାଠରେ ଆହୁଲା କରେ
ତା' ଛେଳରେ ଅଟ୍ଟୁଣ୍ଡା ଦଉଡ଼ି, କଣ୍ଟାବାଂଶ ଖୁଂଟୁ ଖୁଂଟୁ
ଲୁଟେ ବଡ଼ ଜାଲ କରି ଡଙ୍ଗାକୁ ଚଳାଏ
ଘାଟରେ ମହମ ଦିଏ ଆଉ ଯନ୍ତ୍ର ପାଣି ଝରେ ଡଙ୍ଗୀରେ ଉଛାଳେ

ବିଦଗ୍ଧ ଏ ନାଉରିଆ ଜଳ୍‌ଧିରେ ନାଉରୀ ବଣିକ
ଆଟ୍ଟଶାଳ ବୁଡ଼ାବାଢ ସନ୍ତାପରୁ ତେବେ ଯାଇଁ ଉଦ୍ଧାର ପାଇବ ।

ପାଣି ପଦ୍ଧ ମେଘ ହୁଏ କାଆଁଳ କୁହୁଡ଼ି ଆଉ ମେଞ୍ଚା ମେଞ୍ଚା
ବରଫ ପାଲଟେ ବରକୋଳ ଟୋପା ପଡ଼ି ଟପ୍‌ଟାପ୍ ଗାଆଁ ଦାଣ୍ଡ
ଧୂଳି ମାରିଦିଏ । ଗାଆଁ ଦାଣ୍ଡେ ପାଟି ଶୁଭେ
ଝାଞ୍ଜ ଓ କୁବୁଜ ବାଜେ ହରିବୋଲ୍ ହୁଳହୁଳି ଶୁଭେ
ବରଷା ଝିଙ୍କିବା ପାଇଁ ଯାଗ କ ଜନ୍ତାଳ ହୁଏ ହିଛକ ଗସ୍ତାରେ
ଇନ୍ଦ୍ର ରାଜା ପାଣିଦିଅ ବଞ୍ଚାଅ ଏ ଋଷୀ ବାପୁଡ଼ାଙ୍କୁ ଏବଂ ରାଜୁ ଗାଈଙ୍କୁ
ଉତ୍ତରରୁ ଉଙ୍କିମାରେ ଭୁଲାଧଡ଼ି ମେଘ ସଅଁ ସଅଁ ପବନ ଦଉଡ଼େ
ଟୋପା ଟୋପା ମେଘ ପଡ଼େ ବରଡ଼ା ଡାଳିରେ ଝରଝରେ ପାହାଡ଼ ହିହରୁ
ଦେହ ତାର ବଜାର ବେଲୁନ୍ ପରି ମୋଟ ହୁଏ, ସ୍ୱପ୍ନଦେଖେ ଶୋଇବା ଆଗରୁ
ଅପୂର୍ଣ୍ଣ ସେ ପୂର୍ଣ୍ଣ ହେବ ଇଚ୍ଛା ତାର ବହୁଧାର ନଦୀ ହୋଇ ଅମଡ଼ା ମାଡ଼ିବ
ରାସ୍ତାସାରା ଭଉଁରୀ ଓ ଗଣ୍ଡ ସୃଷ୍ଟି କରି, ସାଗରେ ମିଶିବ ।

କର୍ମଠ ସେ କାଠୁରିଆ କାଠକାଟି ହୁଲଉଙ୍ଗା କଲା
କାଠର ଉଆସ କଲା ଖରା ଆଉ ବର୍ଷାରୁ ତରିଲା
ଆଗାମୀ ସେ ଜଳଯାତ୍ରା ପାଇଁ ଏକାଧାରେ ନିବେଶିଲା ମନ
ନିଜେ ସେ ନିଜର ବନ୍ଧୁ ଜିତେନ୍ଦ୍ରିୟ ଅଟଇ ସେ ଜନ ।
ଅରଣ୍ୟରେ ଫୁଲଫଳ ମାଟିର ଫସଲ
ବାଲୁକାରେ ଶାମୁକା ଓ ଶାମୁକାରେ ମୁକ୍ତାଙ୍କ ପ୍ରାବଲ୍ୟ
ଜାଲରେ ଅନେକ ଫାଶ ଦାରାପୁତ୍ର ବନ୍ଧୁ ଓ ବାନ୍ଧବ
ଲୁହର ଭେଳକ ସେତେ ହସକାନ୍ଦ ମାନ ଅପମାନ
ହସିକାନ୍ଦ କଥା ଦେଇ କାଠୁରିଆ ଏ ସବୁଙ୍କୁ ଛାଡ଼ି
କାଠର କଠଉ ପିନ୍ଧି କଣ୍ଠାଜଣ୍ଠା ସବୁଗଲା ମାଡ଼ି ।

ଥମିଯିବ ନାହିଁ କେବେ୍ କାଠୁରିଆ ଚୁଙ୍ଗୀ କ ଟାଙ୍ଗର ଦେଖି
ସାମର୍ଥ୍ୟକ ମୋହାଚ୍ଛନ୍ନ ଅନୁତପ୍ତ ହୋଇ, ସାମାନ୍ୟ କଅଁଳ ସ୍ଥାନ
ଟିକେ ଦେଖି ଦାରାପୁତ୍ର ବନ୍ଧୁ ଓ ସୋଦର
ନିକ୍ଷେପିବେ ଶବ୍ଦଭେଦୀ ଶର

ଭେଦଯିବ ସେ ନାରାଚ ଅସ୍ତି ମଜ୍ଜା ସ୍ନାୟୁତନ୍ତ୍ରୀ ଛନ୍ନଭନ୍ନ କରି
ଜାଳିପୋଡ଼ି ଦୁଳିଭଙ୍ଗା କାଠରୁ ଉଆସ, ଏକଲେସ ଟୋଇଠିରେ
ପଶିଯିବ ସାପଦାନ୍ତ ବର୍ମ୍ମବର୍ଚ୍ଛା । ନିଃସହାୟ ହେବ
ଥମିଯିବ ଆଣ୍ଠୁ ଓ କହୁଣୀ
ସମୁଦ୍ରରେ ଭୂମିକମ୍ପ ଡଙ୍ଗାଟାରେ ପଶିଯିବ ପାଣି ।

କ୍ଷଣକରେ ଲମ୍ବଗୋଡ଼ ବୁଢ଼ିଆଣୀ ମୋହମାୟା ମଣି ଓ କାଞ୍ଚନ
କାବୁକରି ପୋଡ଼ିଯିବେ ପଞ୍ଚେନ୍ଦ୍ରିୟ ଦେହ ଆଉ ମନ, ଛୁଞ୍ଚି ଓ ଡ୍ରାମ୍ପଣ
ସାଂସାରିକ ସ୍ୱତାବ୍ଧୃତ ଜ୍ଞାନ, ସ୍ଥିତିବାଦ, ନାସ୍ତିବାଦ, ଉତ୍ତବାଦ,
ଈଶ୍ୱର ଓ ନଶ୍ୱର ବାଦ,
କେତେ ବାଦ ପ୍ରବଚନ, କୋଟେସନ, ଯୁକ୍ତିବାଦ, ଉଚ୍ଚାଶ ଦର୍ଶନ ବାଦ
ସ୍ୱରଆଉ ବର୍ଣ୍ଣମାଳା ଡାଉଁଡାଉଁ ଫମ୍ପା ଆଉ ବିକଟାଳ ଶବ୍ଦ ।

ଅମାନିଆ କାଠୁରିଆ ସବାଶେଷେ ନାଉରିଆ ହୋଇ
ବଡ଼ ବଡ଼ ବନଶୀରେ ଇଲିସି ଚିତଳ ଧରି ସନ୍ଧ୍ୟାଁ ଖାଇଲା
କଣ୍ଟାରେ ଗୁନ୍ଥିବା ପାଇଁ କଅଁଳମାଛ ଧରିଲା ଖେପାଜାଲ ଫାନ୍ଦ
ବଡ଼ ଗୋଟେ ମାଛ ପଡ଼ି ଡଙ୍ଗାଟାକୁ ନେଉଥାଏ ଭିଡ଼ି
ସେ ଯେତେ ଟାଣିଲେ ଟାଣୁ ଡଙ୍ଗାରେ ସେ ଡଙ୍ଗା ସେ ଅସ୍ଥିର
ଝଡ଼ବର୍ଷା ଆସିପାରେ ସମୁଦ୍ରଟା ଦିଶେ ଭୟଙ୍କର
ରାତିରେ ମଙ୍ଗରେ ବସି ଝାଙ୍କୁଆ ସେ ସାନ୍ତଆଗୋ ରୋମନ୍ଥନ କରେ
ଦୁଇଚଳା ପାଣିପିଇ କଞ୍ଚମାଛ ପଡ଼ିଯାଏ ଚଳନ୍ତ ଡଙ୍ଗାରେ
ସକାଳର ମାଛରଙ୍କା ତା ଉପରେ ଚକ୍କର କାଟନ୍ତି
ତା ଡଙ୍ଗା ମଙ୍ଗରେ ବସି କାଳଗିତ ମାଛ ନଚେଖନ୍ତି
ସେ ଉଠେ ସକାଳ ପରି ସୂର୍ଯ୍ୟପରି ଗାତଡେଇଁ ବନରେ ପହଞ୍ଚେ
ବନଶୀ ଓ ଜାଲଧରି ଗାତ ଲଗି ନୂଆମାଛ ସଞ୍ଚେ ।

ଚୈତ୍ରମାସେ ଏତେ ଦୁଃଖ, ମନେମନେ ଏତେଫୁଲ ଏତେ ବାସ୍ନା
ଅଦେଖା ପଦାର୍ଥ ପାଇଁ ଏତେ ଇଚ୍ଛା ପାଇବାର ଏତେ ଅଭିଳାଷ
ନାଲିରଙ୍ଗ ବାଇଗଣିରଙ୍ଗ ବାସ୍ନାମାନେ ଫୁଲର କୁହୁକ
କୁମ୍ଭାର ଚକଟେ ମାଟି କଲା ଓ ଚକଟା—କେତେ ଗୋଟା ମାଠିଆ କରିବ

ଏ ଦେହର ରଙ୍ଗବାସ୍ନା ହାଡ଼ରକ୍ତ ମାଂସ—ଅଳ୍ପକିଛି ମାଟି ଏବଂ ଚକ ଓ
କୁମ୍ଭାର

ଏପରି ଆସିବ ଦିନ କୁହୁଡ଼ି ଘେରିବ ସୂର୍ଯ୍ୟ, ଦିନଟା ହୋଇବ ରାତି
ସୁଦର୍ଶନ ଚକ୍ର ଚେଣେ ଉଡ଼ାଇବ ମଧ୍ୟାହ୍ନ ସୂର୍ଯ୍ୟଙ୍କୁ
ଅନ୍ଧକାର ବେଷଘର ଅନ୍ଧପୁର ଗାଢ କଳା ହେବ
ମାଂସପେଶୀ ଥକିଯିବ ସୁଦକ୍ଷ ନାବିକ ସିଏ ଚକ୍କାର ଛାଡ଼ିବ
ବୁଡ଼ିଗଲ ଗଣ୍ଡ୍ରକଳେ ରକ୍ଷାକର ଅଠିଦିଅ ହେ ସ୍ନେହୀ ଦର୍ଶକ
ମୁଁ କିଛି ପାରୁନି ବୁଝି ଆଜି କିମ୍ବା ଏଇ ସୁଅ ଏତେ ଖର
ଯା ଦେହରେ ଆଜି କିଆଁ ଅଶ୍ଳୀଳ ଭଉଁରୀ, ଯା କେନ୍ଦ୍ରର
ଏତେ ଆକର୍ଷଣ
ଘରେ ମୋ କଅଁଳା ପିଲା କପୋତ୍ତି ମୋ କରୁଥିବ ଶୋକ
ବୁଡ଼ିଗଲ ଖଣ୍ଡ୍ରକଳେ ଅଠିଦିଅ ନାବଦିଅ ହେ ସ୍ନେହୀ ଦର୍ଶକ ।

ହିମମାମା ଜୀବନ ତା' କିଛି ପାରିଲଣି ଜାଣି ପ୍ରେମକଣ ଅଭିମାନ କଣ
ଯୌବନ ତା' ଚପଲର ସୋଲ୍ ପରି ଘସିହୋଇ ସରୁହେଲା
ସିଲେଇ ଫାଟିଲା । ସେ ଯଦି ହୋଇଲା ପ୍ରୌଢ଼ା
ସ୍ୱପ୍ନ ଆଉ ସରମର କିଆରୀକୁ ଉଜାଡ଼ ଉଜାଡ଼
ଉଦ୍ୟାନରୁ ଫୁଲ ଲୁଟି ଲୁହରେ ବାଦଲ ଆଉ ଝଡ଼ବର୍ଷା କର
କର୍ଦ୍ଦମାକ୍ତ ଚଟାଣରେ ସିଏ ଯଦି ଧାଇଁଲାନି ରଖିଥୋଇ କଣ୍ଟାଯୋତା ପିନ୍ଧି,
ଫୁଲ ଯଦି କଢ଼ି ହୁଏ ପାଖୁଡ଼ାଙ୍କୁ ଠୋକା କର
ବାସ୍ନା ଆଉ ମହୁକୁ ସାଉଁଟି
ଭଅଁରଙ୍କ ଗୀତ ଶୁଣି ପ୍ରଜାପତି ରଙ୍ଗ ଦେଖିଦେଖି
ହୁଅ ତୁମେ ହେ ଦର୍ଶକ ଉଦ୍ୟାନରକ୍ଷକ କିମ୍ବା ପ୍ରତିମା ପୂଜକ
ଶୃଙ୍ଗରେ ତୋଳି ନେଇ ଏ କଢ଼କୁ ଦେବତାଙ୍କ ମସ୍ତକରେ ରଖ ।

ମୁଁ କେବେ ମାଗିନି ପ୍ରଭୁ ଅଭିସାରୀ ରାଧିକାର ମନନେଇ
ଯଜ୍ଞ ଓ ପ୍ରଣାମ କରି ବୈଦିକ ରୀତିରେ ବଂଧୁତାର ହାତଦେଇ
ବନ୍ଧୁର ସୁଦାମା ପରି ଧନରତ୍ନ ମଣି ଓ ମାଣିକ୍ୟ ଦିଅ
ଅଭଙ୍ଗା କୁଣ୍ଡଳ ଦିଅ, ବୈଶାଖୀ ପବନ, କାରଣ
ମୁଁ ମେଲିଛି ହାଲଡଙ୍ଗା ସେଥା ଯେଣୁ ପବନସର୍ବସ୍ୱ

ଝରକା ବାଙ୍କରେ କେବେ ମୁହଁ ଗୁଞ୍ଜି ଆକାଶକୁ ଚାହିଁ
ମୁଁ ମାଗିନି ଆଜ୍ଞେ ପ୍ରଭୁ ଅନ୍ତର୍ଯ୍ୟାମୀ ଭାସମାନ ବାଦଲଙ୍କୁ
ଭୁଲାକରି ମୋତେ ଦିଅ ଆକାଶର ମନ ସବୁ ଚାଂଛି
ମୋ ରେଜେଇ ମନ ଶେଯ ପାଇଁ
ଯଦିବା ଶୁଣିଛି ବହୁଥର ଆମ ସାହି କାଠୁରିଆ ସୁନା କଟୁରୀ ପାଇଲା
ସତ କହି ଜଳପରୀ ଠାରୁ—
ମୁଁ କେବେ ଯାଇନି ପ୍ରଭୁ ସେଇ ଅରଣ୍ୟକୁ
ମୁଣ୍ଡରେ ଠେକରା ବାନ୍ଧି ଲୁହାର କଟୁରୀ ଧରି
ଫିଙ୍ଗିବାକୁ କଟୁରୀକୁ ଝରଣା ଜଳକୁ
ମୁଁ କେବେ ଛାଡ଼ିନି ରଡ଼ି ମିଛଟାରେ
ଧାଇଁଆସ ଲୋକମାନେ
ମୋ ମେଣ୍ଢାପଲକୁ ଏଇ
ଗଧିଆ ଓ ହେଣ୍ଡା ଖାଇଗଲେ ।

ଆମେ ଯେବେ ଶୋଇଯାଉଁ କୋଠରୀର ଦ୍ୱାର ଝର୍କା ସବୁ ବନ୍ଦକରି
ତକିଆରେ ମୁହଁ ଗୁଞ୍ଜି ନାଲି ନେଳି ସ୍ୱପ୍ନ ଦେଖି ଦେଖି
ଆମେ ତ ପାରୁନା ଜାଣି ଆମ ଘର ଚାରିପଟ
ନିଶାଚର ପ୍ରଜାପତି ଉଡ଼ି ବୁଲେ ମଲ୍ଲୀରୁ ତଗଠ
ବାଦୁଡ଼ିଟା ଡେଣା ପିଟେ ଶୂନ୍ୟ ଶୀର୍ଷାସନେ କମ୍ପା ଜାଲେ ପଡ଼ି
କପୋତ ପଡ଼ଇ ଧରା ଡେଣାପିଟି ବ୍ୟାଧ ଜାଲପାଶେ
କପୋତୀ ଦିଅଇ ଧରା ତା'ର ସାଥେ ତା' ଶିଶୁ ଶାବକ
ଶବରର ମନଖୁସି ସିଏ ଆଜି ଚାଲକ ପଣ୍ଡିଲ
ମୋହ ମାୟା ଏ ସଂସାର କେନ୍ଦ୍ର ନୁହଁଇ କାହାର
ଘର ଘରଣୀ ଦେହ କଲାଉଥିବେ ଏବଂ କହିଁ କହିଁ କାନ୍ଦୁଥିବେ
ଝିଣ୍ଟିକା ଝଙ୍କାର ତୋଳେ ବେଙ୍ଗ ରାବେ କଣ୍ଠର ମଠର
ସାରୁପତ୍ର ଛତି ମୋର ଏଇ ମୋର ରାଜଧାନୀ ଗଡ଼
ଆମେ ତେବେ ପଡ଼ି ଯାଉଁ ଚିତ୍ ହୋଇ କଡ଼ ଗଣି ଗଣି
ସତ ଯାଇଁ ମିଛ ହୁଏ ଅସମ୍ଭବ ସ୍ପଷ୍ଟତର ହୁଏ
ଆକାଶେ ଘୁଙ୍ଗୁଡ଼ି ଗୁଡ଼ି କଣ୍ଟାଫୁଟା ଟିଉବ୍ ପରି

ଦେହ ହାତ ମାଡ଼ି ଯାକ ହୁଏ
ଏଠି ସବେ ଭାର ଦୁଃଖ ଭାର ଅବଶୋଷ
ଏଠି କମ୍ପା ଜନ୍ମହେଲ କ'ଣ ଅବା କରଥିଲ ଦୋଷ ।

ଏ କଥା ସତ ଯେ ଥରେ ତୁମେ ଏକ କାଠୁରିଆ ଥିଲ
ମୁଣ୍ଡରେ ଠେକରା ବାନ୍ଧି ମନେ ମନେ ଗାଉଥିଲ କଳାକଳେବର
ଶକ୍ତ କେତେ କଣ୍ଟା ବାଂଶ ହାଣିଥିଲ ତୀକ୍ଷ୍ଣ ତୁମ ଲୁହାର କଟୁରି
ଥରେ ତାକୁ ଫିଙ୍ଗି ନାହଁ ଜାଣିଶୁଣି ଝରଣାକୁ ସୁନା ବେଣ୍ଟ ପାଇଁ
ଯେଣୁ ତୁମେ ସୁମହତ ଲୋକ,
ତୁମେ ଜାଣ ତାହା ସବୁ ନହାତ ଠକାମୀ
ଏହାପରେ ଯଦି ତୁମେ ଏହି ଭବପାରାବାରେ ନାଉରିଆ ହୋଇ
ହୁଲଡଙ୍ଗା ଭସାଇଲ ଆକାମାଟେ ଗାଇ
ବାର ଲଗ୍ନ ଗଣାଗଣି କରି
ସାଗର ତସ୍କର ନୁହେଁ ସିଏ ଜାଣେ
କେବଳ ତ ହୁଲା ଡଙ୍ଗା ତୁମର ସମ୍ବଳ
ଅବୋଲକରାର କଦ୍ ଯେ ଶୁଣିବ
ଏ ରହସ୍ୟ ମାର ଛତା ବଗୁଲି କମ୍ବଳ ।

ଚିତ୍ ହୋଇ ପଡ଼ି ଯେବେ ନିଃସହାୟ ଅସରପା ଛଟପଟ ହୁଏ
ଡେଣାକୁ ସମ୍ବଳ କରି ଚଟାଣରେ ବାରମ୍ବାର ଘିର୍ ଘିର୍ ବୁଲେ
ସେତେବେଳେ ମିଥ୍ୟା ଲାଗେ ଭୌଗୋଳିକ ଯେତେ ଉପପାଦ୍ୟ
ସୂର୍ଯ୍ୟ ଚନ୍ଦ୍ର ଘିର୍‌ଘିର୍ ଘୂରୁଥାନ୍ତି ଆପଣା କକ୍ଷରେ
ବାଦଲ ଶୋଷନ୍ତି ପାଣି ନଈ ସବୁ ଉଜାଣି ବହନ୍ତି
ମାଟିର ଉଷ୍ମତା ସବୁ ଠୁଳକରି ସୂର୍ଯ୍ୟ ଏକ ପ୍ରତିବିମ୍ବ କରେ
ଯଦିଚ ଏ ସବୁର ସାମାନ୍ୟ କଥନ ମିଥ୍ୟା, ମିଥ୍ୟା ତାର ଗଣନା ପ୍ରମାଣ
ଆଜ ମଧ୍ୟ ଭ୍ରମପୂର୍ଣ୍ଣ କମ୍ପାସର ଚିହ୍ନ ଓ ସନ୍ଦର୍ଭ,
ଅନୁମାନ ମନର ବିକୃତି,
ଏ ସବୁ ସମସ୍ତେ ସ୍ଥିର
ଚିତ୍ ହୋଇ ପଡ଼ିଥିବା ଅସରପା କେବଳ ଅସ୍ଥିର ।

ହେ ନାଉରୀ, ଚତ୍ ହୋଇ ଶୋଇବନ
ସବୁବେଳେ ସଚେତନ ଥାଅ
ଏ ସମୁଦ୍ର ଦେହସାରା କୂଳସାରା
ଭୂତ ପ୍ରେତ ଓଥରଙ୍କ ଭୟ ।



# ଏକ ସାପ ସମ୍ପର୍କରେ

ଖବର ଆସିଛି ନଈ ଆରପାଖୁ
ପଲ ଖଣ୍ଡି ଭାସିଯିବ ବଡ଼ ବଡ଼ ଅଟଡ଼ା ଖସୁଛି ।
ପଲଖଣ୍ଡି ତୋଳଥିଲ କଚା ମାଟି ଛଣ ବାଉଁଶରେ
ବାଡ଼ଠାର ବାଡ଼ ନାହିଁ ଉଜୁଡ଼ି ଯାଉଛି ।

ପଲଖଣ୍ଡି ତୋଳଥିଲ—ଭାବଥିଲ
ଖରା ବର୍ଷା ଶୀତ ଠାରୁ ରକ୍ଷା ପାଇଯିବ
ଗଧିଆଟା ଡରିଯିବ ଘର ଭାବ
"ଏ ଘରରେ ମଣିଷ ରହନ୍ତି ।"

ଜନସ୍ରତ ଲଗି ଲଗି ଦୁଆରେ ମୋ ମୂର୍ତ୍ତିଟେ କରିଛି
ଛିଣ୍ଡା କନା ଛଣ ବାଉଁଶରେ
ମୁଣ୍ଡ ତା'ର ଭଙ୍ଗା ହାଣ୍ଡି
ହାତରେ ଆଙ୍ଗୁଠି ନାହିଁ, କାଉ ବଣି ଭାବୁଥିବେ
"ଏଇ ପରା ସେ ଲୋକଟା
ହାତରେ ତା କାଣ୍ଡଶର ଅଛି, ମାରିଦବ ।"

ପଲ ଖଣ୍ଡି ଥିଲବେଳେ ତା ଭିତରେ
ସ୍ୱପ୍ନ ଦେଖୁଥିଲି
ଏ ଫସଲ ବନ୍ଦୀକର ରାଜା ହେବ
ଏ ମୋର ସମ୍ରାଜ୍ୟ । ବାଡ଼ଠାରେ ବାଡ଼ ଦେବ
ପଲକୁ ମୋ ଉଆସ କରିବ ।

ନଈରେ ଅଶେଷ ଫେଣ
ଏଇ ନଈ ଘରଭଙ୍ଗା ନଈ ଏ ନଈର ନାଆ ନାହିଁ
ନାଆ କେତେ ବୁଡ଼ାଇଛି, ଯୁଆ କୂଳର କେତେ ପଲ ଭସାଇଛି
ଅସ୍ପଷ୍ଟ ମୋ କୁଡ଼ିଆଟା ଦୋହଲୁଛି
ଅଟଡ଼ାଟା ଫାଟିଥିଲା ଜାଲି ।

ଏ ନଈଟା ସାପ ଭଳି ପାହାଡ଼ୁ ବାହାରି
ସମୁଦ୍ରର ଗାତରେ ପଶୁଛି

ଇଚ୍ଛାହୁଏ ରାଗ ହୁଏ କେଳା ହେବି
ଏପରି ସାପମାନଙ୍କୁ ପେଡ଼ିରେ ମୋ ବନ୍ଦ କରି
ବିଷଦାନ୍ତ ଝାଡ଼ିଦେଇ, ମାଡ଼ ଦେଇ
ପୋଷା ମନେଇବି,
ସେଇ ହବ ମୋର ସାପ, ଫଣାରେ ତା ବିଷ ଥାଉ
ସେ ବିଷରେ ଦରକାର ନାହିଁ
ଭୟ ମଧ୍ୟ ନାହିଁ । ଫଣା ମୋର ଦରକାର
ନୃତ୍ୟ ମୋର ଦରକାର, କାରଣ, ମୁଁ ଜାଣିଛି
ଏ ସାପର ବିଷଦାନ୍ତ ନାହିଁ ।

ଏ ସାପର ଲାଞ୍ଜ ବାନ୍ଧି ଖେଳାଇବି
ମୋ ପଲ୍ଲୀର ଗୃହକଡ଼
ଏ ଗାଆଁର ଅମାନିଆଁ ଛୁଆ
ଯା'କୁ ଦେଖି ହସିଯିବେ—ଲୁଚିଯିବେ
ଶସ୍ୟପୂର୍ଣ୍ଣ ଫଳପୂର୍ଣ୍ଣ ବାଡ଼କୁ ନ ଆସି
"ଏ ଲୋକର ସାପ ଅଛି, କାମୁଡ଼ିବ ।"

ଦିନଥିଲା ଏ ନଈକି ପ୍ରକୃତରେ ସାପ ଥିଲା
ଏହା'ର ବି ଫଣା ଥିଲା ବିଷଦାନ୍ତ ଥିଲା
ବହୁବାର ଶଳ ଖୋଜି ମୋ ପଲ୍ଲୀରେ ପଶିଯାଇ
କହିଥିଲା—"ମୁଁ ତୁମକୁ ବିଷ ଦେବି ଫଣା ଦେବି ବିଷ ଦାନ୍ତ ଦେବି
ଏ ପଲ୍ଲୀରେ ରହିବାରେ ତୁମର କିଛି ଆପତ୍ତି ନାହିଁତ ?"
ସାପ କି ସୁନ୍ଦର ସତେ
ଯଦି ତାର ବିଷଦାନ୍ତ ନାହିଁ !
ସ୍ଥାନ ତାକୁ ଦେଇଥିଲି ଏକୁଟିଆ ମୋ ପଲ୍ଲୀରେ
କାଳକ୍ରମେ ସ୍ନେହ କରିଥିଲି ।

ଖବର ଆସିଛି ଆଜ ପଲ୍ଲୀଖଣ୍ଡି ଭାସିଯିବ
ମନେପଡ଼େ ନଈ କଥା ପଲ୍ଲୀ କଥା ସେଠାକାର ଆଉ କେତେ କଥା
ଆଉ ମଧ୍ୟ ଇଚ୍ଛାହୁଏ ଏ ନଈରେ ବୁଡ଼ିଯିବି

ଏ ନଈ ତ ମୋତେ ଶହେ
ମୁଁ ତ ଯିବାକୁ ଭଲ ପାଇଥିଲି
ଯିବା ଫେଣକୁ ନାଆ କରି ଆର କଡ଼େ ପହଞ୍ଚ ପାରିବ ।
ମୁଁ ପୁଣି ବସିଛି ଏଠି ପଲଠୁଁ ବହୁତ ଦୂରେ
କେ କହୁଛି ପଲ ଅଛି କେ କହୁଛି ପଲ ନାହିଁ
ମୁଁ କନ୍ତୁ ଭାବୁଛି ବସି—ଏ ନଈ ତ ମୋତେ ଶହେ
ପଲଟାକୁ ଛାଡ଼ ଦେଇପାରେ ।



# ବର୍ଷାଋତୁ ଓ ନିରୀହ ବାଜପକ୍ଷୀ

ସେଦିନ ସକାଳେ
ଅସରାଏ ବର୍ଷାପରେ
କଅଁଳିଆ ମଞ୍ଜିମୂଳ
ଥୁଣ୍ଟା ଗଛ ଦେଖାଦେଲା
ଏମାରାଲ୍ଡ଼ ପଥ । ବତୁରଲା
ଶମୀଗଛ କୋରଡ଼ରେ ଅର୍ଜୁନ ତୂଣୀର
ଶର ମୋର ଫୁଲ ହୋନ୍ତୁ ।
ପୁରୁଣା କର୍ମୀଏ ଏଣେ ମନାସିଲେ
କୈଶୋରର ପୁନରାବର୍ତ୍ତନ
ରୋମନ୍ଥନ ସିଂହାବଲୋକନ ॥

ବରଷାର ସାମାନ୍ୟ ଇଙ୍ଗିତେ
ଶବମାନେ ଶିଶୁ ହେଲେ
ବରଷାର ଆକର୍ଷଣ ସିକ୍ତ କଲା
ଅତୀତ ଓ ବର୍ତ୍ତମାନ
ବୈରାଗ୍ୟ ବରଦ୍ଧ କଲା
ଏ ବଡ଼ ବିଷମ ହେଲା
ବିଡ଼ମ୍ବନା ଆଲୋଡ଼ନ
ପିରାମିଡ୍ ହାଡମୁଠା
ଓଟାରିଲା ପ୍ରାଚୀନ ଯୌବନ ॥

ବର୍ଷାତ ଗୁଡିବ ଦିନେ
ଠାଇଁ ଠାଇଁ ଖରାହେବ
ନିଦାଘ ଗ୍ରୀଷମ ହେବ
ମାଛ ଓ କାଦୁଅ ସବୁ ଶୁଖିଯିବ
ଗାଆଁ ଦାଣ୍ଡ ନିର୍ଜନ ନିସ୍ତବ୍ଧ ହେବ
ବରଷାର ପ୍ରଗଲ୍‌ଭତା ଭୁଲିଯିବ
ଅଜବ ଏ ମାଟି ଓ ମଣିଷ
ଗଡ଼ିଯିବ ମାସ ମାସ ବାରମାସ

ଭୁଲିଯିବ ପରିମାଣ
ରହିଯିବ ମାଣ୍ଡୁଲ୍ ନିର୍ବାଣ
ରହିଯିବ ଗୁଣଗ୍ରନ୍ଥି ସ୍ତୁତି ସ୍ତୋତ୍ର
ପାରୁ ଏବଂ ଦେବଦାସ
ସଜବେଳ ଝାଞ୍ଜି ଓ ବତାସ ॥

ଆମେ ଯିଏ ଗୃହୁଁ ଅଛୁ
ଡେଇଁବାକୁ ଲକ୍ଷ୍ମଣରେ ଝନଗାର
ଏଡ଼ିବାକୁ ପ୍ରଜ୍ୱଳିତ ଧାତବ ପୃଥିବୀ
ଆମେ ସବୁ ସହୋଦର
ସମଦୁଃଖୀ ସମାନ ଝଗୁର
ଭୁଲିଯିବା ଏଣେତେଣେ
ଅରଣ୍ୟେ ଅରଣ୍ୟେ, ବେଢ଼ିଯିବା
ଧୂର୍ଜ୍ଜଟୀର ଜଟା ଗୃରିକଡ଼େ
ଅର୍ପିଦେବା ଆମମନେ ଯେତେ ହଳାହଳ
ଯେତେବ୍ୟଙ୍ଗ ଯେତେ ରଙ୍ଗ
ଦଳବଳ, କଳ ଚଳଗ୍ନଳ,
ଅର୍ପିଦେବା ଝଗ୍ରହ ଓ ଅନ୍ତର୍ଦାହ
ଲକ୍ଷ୍ୟ ଯେଣୁ କୈବଲ୍ୟ ସଗ୍ରଦ ।

ହୋଇଯିବା ମୂକ ବାଜପକ୍ଷୀ
ଚଞ୍ଚୁ ନଖ କାଟିଦେବା
ଉଡ଼ିଯିବା ଧୀରେ ଅନ୍ତରୀକ୍ଷେ
ବାଦଲରେ ମାଡ଼ି ରଚି
ନାଚି ନାଚି ସୂର୍ଯ୍ୟାଲୋକେ
ଚନ୍ଦ୍ରାଲୋକେ, ଖରାବର୍ଷା
ଝଡ଼ ଏବଂ ଝାଞ୍ଜିର ଊର୍ଦ୍ଧ୍ୱରେ
ଝରନ୍ତ ବୈରାଗ୍ୟ ପଥରେ
ମିଶିଯାଇ ମହାଭାବେ, ମହାକାଶେ
ଆଗ୍ନେୟ ସନ୍ଧ୍ୟାରେ ॥



# ଇନ୍ଦ୍ରଧନୁ

ଇନ୍ଦ୍ରଧନୁ ଦେଖିଲି ପଶ୍ଚିମ ଦିଗରେ
ବଡ଼ ସୁଖ ଲାଗିଲା, କୁଳୁରେଇଲା,
ଠଙ୍କିଆ ରସଗୋଲା ପରି
ସିଗ୍ର ପାଗ୍ରବାରରେ ସେ ମୋତେ ଢବୁଠୁବୁ କଲା
ଆକ୍ଷୁ କଲା ।
କହିଲା, ଏ, ଇଆଡ଼େ ଆସ, ସିଆଡ଼େ ଆସ ।
ଆଗ ଚାଲିଇଲା, ତା'ପରେ ଦୌଡ଼େଇଲା ।
ଗୋଲେଇ ପଡ଼ିଆରେ
କେଡ଼େ ବେଗି ବେଗି ଗୁଲେ ଇନ୍ଦ୍ରଧନୁଟା ।

ଯିଏ ଇନ୍ଦ୍ରଧନୁ ଦେଖିନା ନ ଦେଖ, କିଛି କ୍ଷତି ନାହିଁ
ଯିଏ ଇନ୍ଦ୍ରଧନୁ ଦେଖିଛି ଦେଖ, କିଛି ଲାଭ ନାହିଁ ।
ଓଦା ଲୁଗା ଛୁଇରେ ଶୁଖିଯାଏ
ଫୁଲ କୁଣ୍ଡର ଫୁଲ ଗଛ ଗୁରା ଗୁଡ଼ ମରିଯାଏ
ଖୁବ ବର୍ଷିଲେ ସମସ୍ତେ ନଜର
ଖାଲି ମାଂସ କଂସେଇର ନଜର,
କାଶତଣ୍ଡୀ ଫୁଲ ନଈ ପଠାର ।

ଇନ୍ଦ୍ରଧନୁକୁ ଆପଣାର କଲେ
ସତରେ ଲାଭ କ'ଣ ?
ଯେତିକ ଭୋକ ମାରେ, ବେଶୀ ଭୋକିଲା କରିଦିଏ ସେ,
ଯେତେ ଦିଏ, ବେଶୀ ନେଇଯାଏ ସେ
ଯେତିକ ପାଖରେ ଦିଶେ, ସେତିକ ଦୂରକୁ ଚାଲିଯାଏ ସେ ।
ଗୁମ୍ଫା ଦବନି ସେ, ଛତା ଦବ ନି ସେ,
ମାଟି କଣ୍ଢେଇ ନି ଜୀବନ୍ୟାସ ଦବ ନି ସେ ।
ଯା'କୁ କିଙ୍କର କରେ ତାକୁ ମୁନିବ ଦିଏ ନି ସେ
ଯା'କୁ ମୁନିବ କରେ ତାକୁ ବାହନ ଦିଏ ନି ସେ
କନ୍ଦର୍ପ ଶର ଖାଲି ଉସକାଏ
ସାମଗ୍ରୀ ଦିଏ ନି ସେ ।

# ଜନୈକ ବଂଧୁଙ୍କ ପ୍ରତି

ମରିବାକୁ ଏତେ ଅଝଟ କାହିଁ ବନ୍ଧୁ
କେବେ ବଞ୍ଚିଥିଲ ଯେ ?
କିଛିକ୍ଷଣ ବଞ୍ଚିଥିଲେ ମରିଥାନ୍ତ
କେତେଟା କାଦୁଅ ମଣିଷଙ୍କୁ
ଘାଲୁ ଧରେଇ ଦେଇ
ବଞ୍ଚିବାର ପଥରକୁ ବାରମ୍ବାର ପାହାଡ଼ ଉପରକୁ
ଉଠାଇବାର ଦାୟିତ୍ୱ ଦେଇ ।

ପ୍ରେମକରି ମରିଗଲେ ପ୍ରେମଟା
ତୁମର ଜାଗିର ହୋଇଯିବ ବୋଲି ଭାବିଲ କି
ଚହ୍ଲାଭାବ ଜହ୍ନି ଫୁଲଟି ହାବୁକ ଗଲ କି ?
ପ୍ରେମରେ ମୃତ୍ୟୁ ନ ଥାଏ, ଜୀବନ୍ୟାସ ଥାଏ
ପ୍ରେମକୁ ନିଜର କରି ନିଜକୁ ପ୍ରେମର
ନକରି ଦେଲେ ସବୁ ପରି ବିଗିଡ଼ିଯାଏ
ମୁଣ୍ଡପୋତା କେଳା ହୋଇଯାଏ
ଚମ୍ପାଫୁଲ ଓ ଚମ୍ପା ଗନ୍ଧର କଳି ଲାଗେ
କିଏ ଆଗେ
ସବୁ କଇଁଥିଆ ହୋଇଯାଏ
କାମରେ ଆସେନି ।

ଘଣ୍ଟାକର ଦାନାପାଣିଆ ବାରବର୍ଷର କୃପଣତାକୁ
ଘୋଡ଼େଇ ପାରେ କି
ଘଣ୍ଟାକର ସ୍ୱାଧୀନତା ବାରବର୍ଷର ଦାସତ୍ୱକୁ
ଭୁଲେଇ ପାରେ କି
ଘଣ୍ଟାକର ନିଃସ୍ୱାର୍ଥ ପ୍ରେମ ବାରବର୍ଷର ପ୍ରବଞ୍ଚନାକୁ
ମହନୀୟ କରିପାରେ କି
ଘଡ଼ିକର ଆନନ୍ଦ ବାରବର୍ଷର ହା' ହୁତାଶକୁ
ଉପଶମ କରେ କି ?
ଆତ୍ମହତ୍ୟା ହବା କେଡ଼େ ସହଜ ହୋ ସତେ

ଚନ୍ଦ୍ରସ୍ପୃ ହବା କେତେ ସହଜ ହୋ ସତେ
ଶହୀଦ ହବା କେତେ ସହଜ ହୋ ସତେ !
ଏ ସବୁ ଅନ୍ଧାର ରାତିର ବାଟବଣା ବାଟୋଇଙ୍କୁ
ଜୁଳୁଜୁଳିଆ ପୋକଗୁଡ଼ାକ
ଭୁଆଁ ବୁଲାନ୍ତି
ଖତେଇ ହୁଅନ୍ତି ଏମାନେ
ଅନ୍ଧାରକୁ ବହଳ କରନ୍ତି ଏମାନେ ।

ପର ଠେକରେ ଖଟାଦେଖି
ଟାକରା ଘୁଟା,
କି ଆନନ୍ଦ ଥାଏ ହୋ ସେଥିରେ
କେତେ କଷ୍ଟ ସହି ସହଜ
ହେବାକୁ ଚେଷ୍ଟା !
ରୋଗୀ ମରିଗଲେ ରୋଗ ମୂଳପୋଛ
ହୋଇ ଯାଏ କି ?
ଲେଉଟିଆ ଶାଗ ସିଏ
ଯେତେ କାଟ, ପୁଣି ଲେଉଟିବେ ସିଏ
ମାଗୁର ମାଛର କଠା ଲାଞ୍ଜ ପରି
ସେ ତେଉଁଥିବ, ଯେମିତି ବଞ୍ଚିଛି
ପାଣିରେ ଛାଡ଼ିଦେଲେ
ଶିରା କାଟି ପହଁରି ଯିବ କି ହୋ ସିଏ ?

ବନ୍ଧୁ, ଅନ୍ଧାର ଘରେ ବେକରେ ଫାଶ ଗଳେଇଲା ବେଳେ
ଝଲେଇ ଆଖି ଦେଖିବ
ନଈ ଗଣ୍ଡି ପାଖକୁ ଯାଉଁ ଯାଉଁ
ହୁଣ୍ଡା ଆଖି ଦେଖିବ
ବଣକୁ ଯିବ—ହୁଁ
ଆମ୍ବ ଖାଇବ—ହୁଁ
ମହୁ ଚାଖିବ—ହୁଁ

ବାଘ ଦେଖିଲେ ଡରିବ ନାହିଁ
କଛା ଫିଟେଇ ଲଙ୍ଗଗୃଙ୍ଗି ପଛେଇ ପଛେଇ ଧାଇବନ ?
ଆମ୍ବ ନ ଖାଇ ମହୁ ନ ଚାଖି ମଧ୍ୟ
ବାଘ ଦେଖିବ ॥
ବନ୍ଧୁ , ଏ ବଦୁଡ଼ି ପରି ଜଳୁଥିବା ଗୋଲ ଆଖିଗୁଡ଼ାକ
କଛୁ ସମୟ ଲଗି
ଜଗନ୍ନାଥଙ୍କ ଆଖି ଧ୍ୱବଦେଲେ କ୍ଷତି କଣ ?



# ନାଉତୁମ୍ବା ଉପାଖ୍ୟାନ

ସବୁ ଦେଖୁଛୁରେ ଭାଇ,
ସବୁ ଶୁଣୁଛୁ, ସବୁ ଜାଣୁଛୁ
କେତେ ଲୁଚଲୁଚ ତୁ ଦେଖାଉଛୁ ଆଜକୁ
କେତେ ଦିବ୍ୟବାଣୀ ଜାଣିଛୁରେ
କେତେ ଆକ୍ଳନ୍ତର ଚିତାଚେତନ୍ୟ ଆଙ୍କୁଛୁରେ
ନାକରେ ଗ୍ରୀବରେ କପାଳରେ
କେଉଁ ସାତ ପୁରୁଷର ତେଲ ଟିକେଟା କୋଥଳୀ କଥା କହ୍ନ
ନୂତନଚାର ବାହାବା ନେଇ ଯାଉଛୁରେ ତୁ
ଧୂଳିଭରି କରୁନ୍ତୁ ରଙ୍ଗ ବୋଳୁଛୁ
ତୋ ଠଣାରେ ଥିବା ମାଟି ମୟୂରଟା
ମେଘ ଦେଖି କେବେ ନାଚିଛି କରେ ?

କେତେ ତୋଫା ଧଳା ନାଉମଞ୍ଜି ଟିଏରେ ତୁ
କେଉଁଠି ଥିଲୁ କପର ଭିତରକୁ ଗଲୁ
ପୁଣି ଆସିଲୁ ପୁଣି ଗଲୁ
ନେମନ୍ତରୁ ପେଟ ବୁଲିବୁଲି ନସ୍ତାନ୍ତ ହେଲୁ
ଭାବିଲୁ ନା ଏଠା ନୁହେଁ, ସେଠା ନୁହେଁ, ତେବେ କେଉଁଠା ?

ପଚ୍ଛଚେଉଛୁ କାହିଁ ନାଉ ହେଲୁ ବୋଲି
ଯାହା ହେଲେତ ହବୁ ନାଉ ହେଲେ ହବୁ
ବାହୁଆତ ମଞ୍ଜି ହେଲେ ହବୁ
ନାଉ ବର୍ଦ୍ଧନ ମହାନ ହୋଇ ରହେ
ନାଉର ବର୍ଦ୍ଧନ ଯୌବନ ବୃଦ୍ଧ
ନାଉରୁ ନାଉତୁମ୍ବା ହୁଏ
କନ୍ଦ ପାଣି, ଖାଲ ପାଣି, ଛଙ୍କା ପାଣି, ନାଉ ର ପାଣି
ନାଉତୁମ୍ବାକୁ ନଇଁକ ଦେଖ
ପାଣି, ପାତାଳ ଗଭୀର, ଭଅଁର କଳା ପାଣି ।

ମୋ ଜାଣିବାରେ ତୁ ସବୁବେଳେ କନକନ ହେଉଛୁ
ଛନକୁଛୁ ଚରକୁଛୁ, କାହାକୁ ଖୋଜୁଛୁ କରେ ?
କାହାକୁ ଅପେକ୍ଷା କରୁଛୁ କରେ
ପ୍ରେମିକ ପ୍ରେମିକାକୁ ଖୋଜିଲା ପରି
ଦୋଷୀ ଦଣ୍ଡକୁ ଅପେକ୍ଷା କଲା ପରି ?
ଆରେ ବାବୁ, ସେ ଅପେକ୍ଷା, ସେ ଖୋଜିବାରେ
ପରିସମାପ୍ତି ହୁଏନାରେ, ପୁଣି ଫେରେ
ଛାତରୁ ଖସି ପଡ଼ିଥିବା ଝିଟିପିଟି ପରି
କିଛି ସମୟ ଗୁମ୍ ମାରି ରହିଯାଏ
ତାପରେ ଯେଉଁ କଥାକୁ ସେଇ କଥା ।
ମାନବେ, ମାନବେ ତାର ଅପସୃୟମାଣ ଦିଗ୍‌ବଳୟ
ମାନବେ ତାର ଉଇହୁଙ୍କା ପରି
ଯେତେ ଭାଙ୍ଗୁଥିବ ସେତେ ଗଢ଼ିଉଠୁଥିବା ଦାବୀ ।

ମୁନିଆ ପଥର ଥିଲୁ , ଗଡ଼ି ଗଡ଼ି ଶାଳଗ୍ରାମ ହେଲୁ ।
ପେଡ଼ିଶାଢ଼ୀ ଥିଲୁ , ଧରବା ହେଲୁ
ଝିଅଟେକ ଥିଲୁ , ଖରାପ ହେଲୁ , ଅପନ୍ତରାରେ ପଡ଼ିଲୁ
ଟିକ ଗଡ଼ିଗଲା ଗୁଣ୍ଡ ହେଲୁ ମାଟିରେ ମିଶିଲୁ
କଣ ରହିଲାରେ ତୋର
ମୁନ କୁଆଡ଼େ ଗଲା ଜରି କୁଆଡ଼େ ଗଲା
ଝିଅ କୁଆଡ଼େ ଗଲା ?
ବାୟା ବସା ଛିଡ଼ିଗଲେ ଚଢ଼େଇ ଚୁହେନାରେ ସେଥିରେ
ପୁଣି କାଠିକୁଟା ଗୋଟାଇ, ନୂଆ ବସା କରେ ।
ବେଶୀ ଭାବୁଛୁ କରେ ?
ସେ ପାଟି, ସେ ନଈ ବଢ଼ି , ସେ ଚକ୍ର ସେ ପବନ
କାହାକୁ ରଖେନାରେ, କାହାକୁ ଦେଖେନାରେ
କଅଁଳ ଛନଛନ ନାଉଟିକୁ
ନାଉଭୁମ୍ବା କରି ଦିଏରେ ସେ ।

କଙ୍କଡ଼ା ଦେଖି ଦାର୍ଶନିକ ପରି ଗୃହୁଁକୁ କମ୍ପା ?
ଜାବୁଡ଼ି ଧରିବାକୁ ଇଚ୍ଛା ? ପଛେଇ ପଛେଇ ଯିବାକୁ ଇଚ୍ଛା ?

ମଜବୁତ ଖୋଲପା ତିଆରି କରିବାକୁ ଇଚ୍ଛା ?
ଏ ସବୁ କାଣ୍ଡ କାରଖାନା ଖାଳେଇ ଭିତରେ ବାବୁ,
ଜାବୁଡ଼ି ଧରିବୁ ବାଉଁଶ ପାତିଆକୁ
ପଟେଇ ପଟେଇ ଯାଇଁ ଓଲଟି ପଡ଼ିବୁ
କି ବିକଳ ଅବସ୍ଥା ତୋର,
ତୋ ପେଟଠାରେ କେଉଁ ଠାଣ ଖୋଲପା ଅଛି ଯେ
ତୋତେ ସାହା କରିବ, ଚନ୍ଦ ପଠେଇ
ନୋଳିଆ ହାତ ଧ'ଟାକୁ କାଟି ପକାଇବ ?

ବେଶୀ ଗୁଡ଼ାଏ ଗୁଣି ହେଉଛୁ ପରା
ବୁଢ଼ିଆଣୀକି ଦେଖିଲେ ଭାବୁଛୁ, ବେଙ୍ଗକୁ ଦେଖିଲେ ଭାବୁଛୁ
ଏରଣ୍ଡି ବାଡ଼ ତଳେ କଙ୍କଡ଼ାବିଛା ଦେଖି ଭାବୁଛୁ
ହେଲେ କାମରେ କାହିଁ କରେ ?
ତୋ ନିଜ ଲଙ୍ଗୁଡ଼ରେ ତ ବିଷ,
ଘର ଗନ୍ଧ ତୋର ସେଥିଲାଗି
ହଲେଇ ହଲେଇ ବୁଲୁଛୁ, ଆ ହାତରେ
ତା' ହାତରେ ଛୁଇଁ ଦେଉଛୁ, କଷ୍ଟ ଦେଉଛୁ,
ମୁରୁକି ହସୁଛୁ, ଗୁଣୁଗୁଣୁ ହେଉଛୁ ।
ତୁ କଉ ଅନ୍ଧାରରେ ବସି, ଲମ୍ବା ଜିଭ ବଢ଼େଇ
ଆଲୁଅରୁ ପୋକ ଜୋକ ଟାଣି ନ ନେଉଛୁ ଯେ ?

ମୁଁ ସବୁ ଦେଖୁଛିରେ ସବୁ ଶୁଣୁଛି
ଯଦି କିଛି କାଟିବୁ ଜିଭକୁ କାଟିଦେ, ଶ୍ରେଷ୍ଠ କରିଦେ
ଯଦି କିଛି ଖାଇବୁ ଖାଇଦେ ତୋ ବିଷ ଲଞ୍ଜିକୁ
ନୀଳକଣ୍ଠ ହୋଇ ଯା'
ନଜର କରିପକାରେ ନଜର କରିପକା
ତୋଶପର ଝଲଝଲଉ ଥିବା, କନକନ ଛନଛନ ହେଉଥିବା
କଷ୍ଟରେ ଛଟପଟ ହେଉଥିବା କେତେଟା ମଣିଷଙ୍କୁ ।

# ପ୍ରାର୍ଥନା

ପ୍ରଭୁ ମୋର ଚନ୍ଦ୍ରା ନେଇ, ଦେଇ କିଛି ଅଭିବ୍ୟକ୍ତି
ଝଲ୍‌କାର ଆଲୋକ ଦେଇ
ମୋତେ ତୁମେ ଛାଡ଼ି ଚାଲିଯାଅ । ପରଖ
ମୋ'ର ଶକ୍ତି, ସ୍ୱଚ୍ଛନ୍ଦରେ ବଢ଼େ ଅନୁରକ୍ତି ।

ମୁଁ ହେବିନି ତୁମ ଅନୁଚର, ଭକ୍ତ ବା କିଙ୍କର ।
ବରଂ ହେବି ଖୋଳର ବାରୁଦ, ଜଳିଯାଇଁ କରିବି ମୁଁ ଶବ୍ଦ ।
ସେ ହେବ ଉଦ୍ଦାମ ମୃତ୍ୟୁ, ମୁଁ ଚାଖିବି ସ୍ୱାଧୀନତା ସ୍ୱାଦ ।

ଇଚ୍ଛାର ପୂରଣ ହେଲେ ମୁଁ ବହୁତ ଖୁସି ହୁଏ
ଆଉ ତାକୁ ଡାକ କହେ । ଠଙ୍କାଥିଲେ ସ୍ୱେଚ୍ଛାପ୍ରାପ୍ତ
ହଏ । କିନ୍ତୁ ହାୟ, ଦୁଇଦିନେ ଝଡ଼ିଯାଏ ଉଲ୍ଲାସର
ଫୁଲ ଦଳ, ମରିଯାଏ ମୋ ମନରେ ଅପରକୁ
ଈର୍ଷାନ୍ୱିତ କରିବା ଆଗ୍ରହ । ଏତେଗୁଡ଼ା ଲେଖିଗଲେ,
ଆଙ୍କିଗଲେ, ବକିଗଲେ ବେଶୀ କିଛି ହୋଇଯାଏ ନାହିଁ ।
କଟିଯାଏ ବଞ୍ଚିବାର ମୋହ ।

ସବୁବେଳେ ଜଟିଳ ଓ ଅସନ୍ତୁଷ୍ଟ କାମନାର ସ୍ତର
ସବୁବେଳେ ତରତର, ଆଉ ଲୁହିଁ ତାକୁ ଲୁହିଁ
ଦିନରାତି ନୂଆ ପାଇଁ ଜର । ମୋ କବିତା ହୋଇପାରେ
କାମନାର ନଗ୍ନ ଉତ୍‌ଥାନ—ମାଂସ ଛାଡ଼ି ମନର ସଂବେଗ ।
ତେଣୁ ପ୍ରଭୁ, ଅନୁରୋଧ, ଦିଅ ମୋତେ କିଛିକାଳ
ମଧୁଚନ୍ଦ୍ର ରାତିର ଆବେଗ । ଦିଅ କିଛି ଅଭିଜ୍ଞାମି ।
ନିଷ୍ଠୁରତା, ଦୟା ନିଷ୍ଠା ପ୍ରେମ
ଏବଂ କୈବଲ୍ୟର ବିଦଗ୍ଧ ସଂଯୋଗ ।
ତାକୁ ପାଇ ବୈଧ ଓ ଅବୈଧ କିଛି ସୃଷ୍ଟି କରି
ଶାନ୍ତ କରେ ମୋ ମନର ଆଲୋଡ଼ନ, ଉଚ୍ଛନ୍ନ ତରଙ୍ଗ ।
ତାକୁ ପଢ଼ି ଜଣେ ଛଦ୍ମ ପ୍ରକୃତିସ୍ଥ ହୋଇ, ତୁମକୁ
ଓ ଏ ତୁମର ଦୁନିଆକୁ କରିପାରେ ବ୍ୟଙ୍ଗ । ମୁଁ ଜାଣିବି
ଶ୍ରମ ଓ ପ୍ରାର୍ଥନା ମୋର ହୋଇଛି ସାର୍ଥକ । ଅନେକ କରିଛି
ମୁହିଁ ଭଲକାମ । ସ୍ୱଚ୍ଛନ୍ଦରେ ଯିବି ସ୍ୱର୍ଗଲୋକ ।

# ଆବିଷ୍କାର

ସେ ବୁଲୁଛି ଆମ ଇଲାକାରେ
ରାତିସାରା, ଅନ୍ଧାରରେ, ଅନ୍ଧ ସିଏ
ଚାଲିବାକୁ ବାଡ଼ିଟିକୁ ଠୁକୁଠୁକୁ କରେ ।

ସେ ଆମକୁ ଜାଣେନାହିଁ, ଆମେ ତାର
ନାଁ ଜାଣୁ , ରୂପର ବର୍ଣ୍ଣନା ଶୁଣୁ
ଭିନ୍ନରୂପେ ବିଭିନ୍ନ ଭାବରେ, ନାଆଁ ତାର
ଜପି ହେଉ, ତା' ନାଆଁରେ ଗୀତ ଗାଉ ଗୁଣୁଗୁଣୁ
ଘରେ ଅବା ସର୍ବସ୍ଥଳେ ବିଭିନ୍ନ ରାଗରେ
ଯେପରିକି ଆମ ଇଚ୍ଛା ତା'ର ଇଚ୍ଛାରେ ।

ଅନ୍ଧଟିର ଇଚ୍ଛା କିଣ, ତାକୁ କିଏ ଖୋଜନ୍ତାକି,
ତାକୁ କିଏ ଷାଉଁନେଇ କହନ୍ତାକି, ହେ କ୍ଲାନ୍ତ ପଥିକ
ଏ ରାତିଟା ରହିଯାଅ, ଟିକିଏ ବିଶ୍ରାମ ନିଅ
ରୁଖାଶୁଖା ଦୁଇମୁଠା ଖାଇଦିଅ
ଆମେ ତ ଦୟାଳୁ ଲୋକ
ଦେଖି ତୁମ ରୂପଭେକ ଦୟା ଆସେ
ଆଜି କିଛି ମିଳିନାହିଁ ଭିକ ?

ଆଉ ସେ କହନ୍ତା, ଭିକ ମୁଁ ମାଗେନା ବାବୁ,
ମୁଁ ଜଣ୍ଡାଳ ସ୍ଥିରକରେ ପଦାର୍ଥର ଅବସ୍ଥିତି
କେଉଁ ଜାତି କିପରି ପ୍ରକୃତି, ମୁଁ କା'ର ଖାଏନା କିଛି,
ଦୁରକର ମୋ ରାଜ୍ୟ ସମ୍ପତି
ମୋ ମୃତ୍ୟୁର ହାକ୍ସ ଦେଇ,
ତୁମେ ସବୁ କରୁଅଛ ଆତ୍ମରତି ।

ମୁଁ ଚାହେଁନା ପାଇବାକୁ ଚାଲିଗଲା ରାଜ୍ୟମୋର
ମୁଁ ଚାହେଁନା ଶୁଣିବାକୁ ମୋ ରାଜ୍ୟର ଭଙ୍ଗର ଖବର
କଳା ମୂକ ଅନ୍ଧ ହୁଏ, ଅନ୍ଧାରରେ ହଜିଯାଏ
କେହି ମୋତେ ଦେଖେନାହିଁ,
ଅନେକ ଯନ୍ତ୍ରଣା ମୋର ହଜିବାରେ
ଅନେକ ଆଗ୍ରହ ମୋର ଗୋଚର ହେବାରେ ।

ଯେଉଁମାନେ ବଞ୍ଚିଅଛ ମୋ ମୃତ୍ୟୁର ଗହ୍ବରୁ
ଜୀବନ୍ୟାସ ନେଇ, ଯେଉଁମାନେ କରୁଅଛ ଆତ୍ମରକ୍ତ
ଦୂର କର ମୋ ରାଜ୍ୟ ସମ୍ପତ୍ତି,
ଯଦ୍ୱର ଦସ୍ୟୁଙ୍କୁ ତୁମେ, ଦେଖି ଦେଖି ଅନ୍ଧକାର
ତା'ମଧ୍ୟରେ ଭ୍ରାମ୍ୟମାଣ ଗାଢ଼ ଅନ୍ଧକାର
ଶୁଣି ଶୁଣି ମୋ ଠେଙ୍ଗାର ଠୁକୁଠୁକୁ ଶବ୍ଦ
ମୋତେ ତୁମେ ଆବିଷ୍କାର କର ।



# ସ୍ମୃତି ଓ ସଙ୍କେତ

ଏ ସନ୍ଧ୍ୟାର ଗୋଲାପୀ ବାଦଲ ! କେତେ ତୁମେ ଭଲ ।
କେତେ ସତେ ଇଚ୍ଛା ହୁଏ ମିଶିବାକୁ ତୁମ ସାଥେ
ପଦେ ଅଧେ କଥା କହି ଟିକେ ହସି ଉଡ଼ିବାକୁ ସମାନ୍ତର
ହୋଇ ତୁମ ସାଥେ ।
ଖୁବ ଭଲ ଲାଗେ, ମାନେ ଏଇ ତୁମ
ରଙ୍ଗୀନ୍, ବର୍ତ୍ତୁଳ ଏବଂ ହାଲୁକା ହେବାର
ଏଇତୁମ ନୀରବରେ ନିଷ୍ଠୁର ଶବଦରେ ଗୁଳିଯିବା ଦୂରଦୂରେ
ବହୁଦୂରେ, ଏଇତୁମ କଅଁଳା ବାଛୁରୀ ପରି ନିସ୍ପୃହତା ଚପଳତା
କଚ୍ଛୁବାଟ ଧାଇଁଯାଇଁ ଚଟ୍‌କରି ବୁଲାପଡ଼ି ଆଗେଇବା
ଭିନ୍ନଦଗେ, ନିର୍ବିକାରେ, ନିଃସଙ୍ଗରେ ।

ଫୁଲେଇ ବାଦଲ, କେତେ ଥର ମୁଁ ଭୁଲିଛି ସତ୍ତା ମୋର
ମୋର ବନ୍ଧ, ଚିନ୍ତାଧାରା, ନୈସର୍ଗିକ ଜ୍ଞାନ ଆହରଣ
କେତେଥର ମୁଁ ଏଡ଼ିଛି ତୁମ ଲଯାଣିଆ ହସ,
ଇସାରା ଓ ଆକର୍ଷଣ, କେତେଥର ମୁଁ କହିଛି
ଆରେ ମନ, ସୂର୍ଯ୍ୟାସ୍ତ ଆସିବ, ଉଡ଼ିଯିବ ରଙ୍ଗର ବାହୁଲ୍ୟ
ଶୁନ୍‌ଶାନ୍ ପଡ଼ିଯିବ ପ୍ରକୋଷ୍ଠ ଓ ଦର୍ଶକ ଗ୍ୟାଲେରୀ, ଯାହାଶେଷ
ଅଭିସାରୀ । ଆକାଶର ନିର୍ମମ ନୀଳିମା ଗ୍ରାସିଯିବ ଗୃହଦ୍ୱାର
ତଳ ଓ ଉପର, ନୀଳ ଏବଂ ଗାଢ଼ନୀଳ, ଅନ୍ଧକାର ମୁଖଭରା ଅନ୍ଧକାର
ହର୍‌ବଲସ୍ପେ ମିଶିଯିବ ଏ ଫୁଲେଇ ବାଦଲଙ୍କ ସତ୍ତା
ଫିକା ପଡ଼ିଯିବ ବାବୁ ଗୋଲାପୀ ଦେହର ଯେତେ ତିଳଚିହ୍ନ
ରହିଯିବ ନିରାଟ ଶୂନ୍ୟତା । ମନ ଓ ଆଗ୍ରହମାନେ ପଛେଇବେ
ସନ୍ତର୍ପଣେ, ଅଲକ୍ଷ୍ୟରେ ମଶଗୁଲେ ଖେଳ ଓ ସଫଳତା । ଇତିହାସ
ଟାଣିନେବ ହାତଧରି ପୁରାତନ ପ୍ରସ୍ତର ସଭ୍ୟତା ।

ଫୁଲେଇ ବାଦଲ, କେତେ ଯେ ଆନନ୍ଦ ପାଅ
ଅପରକୁ ଉସକେଇ ହାତେ ଧରି ମେଣ୍ଟା ମେଣ୍ଟା

କୃଷ୍ଣଚୂଡ଼ା ଫୁଲ, ହାର କର ମହାକାଳ ଫଳ,
ମୋ ଗଣ୍ଡକୁ କର ହିଙ୍ଗୁଳ । କେବେ ଥରେ ପଚାରିଛି
ମୁହଁଖୋଲି ତୁମଘର ହାଲ୍‌ଚାଲ୍, ପରୀକ୍ଷାରେ କ'ଣ କଲ ?
ମୁଁ କଣ ଭାବିଲି ଅବା ନଭାବିଲି, ତୁମର ଯେ କ'ଣ ଗଲା,
ତୁମେ ଯଦି ଠିକ୍ ପିଲ, ଆଉକେବେ ଆସିବନି ।
ତୁମେ ଯଦି ଠିକ୍ ପିଲ ପିଠି ଖୋଲି ଚାଲିବନି ଆଗେ ମୋର
ତୁମେ ଯଦି ଠିକ୍ ପିଲ ପାଖେ ଆସି ଗେହ୍ଲେଇ ହବନି
ତୁମେ ଯଦି ଠିକ୍ ପିଲ ବୁଝିବନି ହାଲ୍‌ଚାଲ୍ ମୋର ।

କିନ୍ତୁ ହାୟ, ମନ ମୋର ଅବୁଝା ଓ ଅମଣିଆ
ମୋର ଘର ଡ଼ିଙ୍କି ତ କୁମ୍ଭୀର ।
ଏ ସନ୍ଧ୍ୟାର ଗୋଲାପୀ ବାଦଲ, ଏ ଯେଉଁ ଗୀତଟି ଆସେ
ଧୀରେ ଧୀରେ ପବନରେ ଶିସ୍ କାଟି, ଏ ଯେଉଁ ଫୁଲଟି ଦେଖ
ଚୂପ୍‌ଚୂପ୍ ଫୁଟୁ ଆସେ ରକ୍ତରଙ୍ଗ ଧରି—ଖୋଲିଦିଏ
ଆସ୍ତରଣ ପାଞ୍ଚବର୍ଷ ତଳ ବସନ୍ତର
ଗୋଳିଦେଇ ଫଗୁ ଓ ସିନ୍ଦୂର
ଏ ଯେଉଁ ତରଳ ବାସ୍ନା, ବେଣୀବନ୍ଧା ବଉଳମାଳାରେ
ସ୍ମୃତି ମୋର ଅସ୍ଥିରଥୀ ମନକୁ ମୋ ବେଢ଼ି ଛନ୍ତି ଅନ୍ୟାୟ ଯୁଦ୍ଧରେ
ପାଞ୍ଚବର୍ଷ ତଳପାଏ କ୍ଷୀରଚନ୍ଦ୍ର ଲକ୍ଷ୍ୟକରି
ଖାତାଖୋଲି ହସି ଉଠେ ଫୁଲର ଫସିଲ୍
ସ୍ମୃତି ତାର କୋଅଁଳି ନମୀଳି ପଣ
ଚିରନ୍ତନ ଧଳା ଓ ପବିତ୍ର ।
ସ୍ମୃତି ତାର ଏ ସନ୍ଧ୍ୟାର ଗୋଲାପୀ ବାଦଲ
ପାଞ୍ଚବର୍ଷ ତଳେ ଶୁଣିଥିବା ଗୀତସ୍ୱର,
ଅନ୍ତରମ୍ଭା ଫସିଲ୍‌ର, ସ୍ମୃତି ଓ ସଙ୍କେତ ।
ସ୍ମୃତି ତାର ଏ ଯାହାରେ ଜାଣିଶୁଣି ହଜିବାର
ଆଶା ଓ ଇଙ୍ଗିତ ।